# ସିଦ୍ଧ ଭୈରବୀ



ରଘୁନନ୍ଦନ ପାଣିଗ୍ରାହୀ

# ସିଦ୍ଧ ଭୈରବୀ

( ଉତ୍ପତ୍ତି, ପୀଠ ମାହାତ୍ମ୍ୟ, ଅର୍ଥନୈତିକ ଓ ସାମାଜିକ ସ୍ଥିତି, କିମ୍ବଦନ୍ତୀ, ଇତିହାସ, ପୂଜାପଦ୍ଧତି ପର୍ବପର୍ବାଣୀ, ଜପ, ମନ୍ତ୍ର, ଜଣାଣାଦି ସମ୍ବଳିତ )

ଶ୍ରୀ ରଘୁନନ୍ଦନ ପାଣିଗ୍ରାହୀ

ଶ୍ରୀ ସାହିତ୍ୟ ସଂସଦ, ବ୍ରହ୍ମପୁର

# ସିଦ୍ଧ ଭୈରବୀ

**(SIDDHA-BHAIRABI)**

ଲେଖକ : **ଶ୍ରୀ ରଘୁନନ୍ଦନ ପାଣିଗ୍ରାହୀ**
ଗ୍ରାମ : ରଙ୍କୁଡ଼ା, ପୋଷ୍ଟ : ବାଦପୁର (ଗଞ୍ଜାମ) ।

ପ୍ରକାଶକ : **ଫଲ୍‌ଗୁ ସାହିତ୍ୟ ସଂସଦ,**
ନେହେରୁ ନଗର, ବ୍ରହ୍ମପୁର-୩
( ରେ: ନଂ: ଜି.ଜେ.ଏମ୍ ୩୦୨-୨୫/୮୩-୮୪ )

ମୁଦ୍ରକ : **ଲକ୍ଷ୍ମୀ ପ୍ରିଣ୍ଟର୍ସ, ବ୍ରହ୍ମପୁର-୭୬୦୦୦୪**



ପ୍ରଥମ ପ୍ରକାଶ : **ସାଧାରଣତନ୍ତ୍ର ଦିବସ, (୧୯୮୪)**

**ମୂଲ୍ୟ : ଦୁଇ ଟଙ୍କା**

❊ ପରିବେଷକ ❊

**ବଜୟନ୍ତୁ ବୁକ୍ ଷ୍ଟୋର, ବ୍ରହ୍ମପୁର (ଗଂଜାମ)**

---

# ପଦେ କଥା

ଶ୍ରୀ ରଘୁନନ୍ଦନ ପାଣିଗ୍ରାହୀଙ୍କ ଦ୍ୱାରା ଲିଖିତ 'ସିଦ୍ଧ-ଭୈରବୀ' ବହିଟି ଦେଖିଲି । ଆଜିକାଲି ଓଡ଼ିଆ ସାହିତ୍ୟରେ ଶସ୍ତା ଗଳ୍ପ ଉପନ୍ୟାସ ପୁସ୍ତକର ଯେପରି ବହୁଳ ପ୍ରଚାର ଓ ପ୍ରସାର ଘଟୁଛି, ସେ ଅବସ୍ଥାରେ ଆଧ୍ୟାତ୍ମିକ ଚିନ୍ତା ଓ ଭାବନା ସମ୍ବଳିତ ଲେଖାଗୁଡ଼ିକର ସ୍ଥାନ କେଉଁଠି କଳ୍ପନା କରି ହୁଏ ନାହିଁ । 'ଶ୍ରୋତା ବକ୍ତାଚ ଦୁର୍ଲ୍ଲଭଃ' ନ୍ୟାୟରେ କେହି ଲେଖିବା ପ୍ରୟାସ କରନ୍ତି ନାହିଁ ଏବଂ ଲେଖା ହେଲେ ମଧ୍ୟ ଅନୁରୂପ ପଢ଼ିବା ଆଗ୍ରହ ପ୍ରକାଶ ପାଏ ନାହିଁ । ଏ ଦୃଷ୍ଟିରେ 'ସିଦ୍ଧ-ଭୈରବୀ' ସମ୍ବନ୍ଧରେ ଆଲୋଚନା କରିବାର କଥା ।

ଏଥିରେ ଲେଖକ ବହୁତ ଅନୁସନ୍ଧାନପୂର୍ବକ ଆଦ୍ୟଶକ୍ତି ଭୈରବୀଙ୍କର ପ୍ରତିଷ୍ଠା ଓ ମୂଳୋତ୍ପତ୍ତି ସମ୍ବନ୍ଧରେ କେତେକ ପାରମ୍ପରିକ ତଥା କିମ୍ବଦନ୍ତୀମୂଳକ ତଥ୍ୟର ପରିବେଷଣ କରିଛନ୍ତି । ସେତେବେଳେ ମନ୍ତ୍ରୀଡ଼-ଭୈରବୀଙ୍କ ବିଷୟରେ ଆଜି କୌଣସି ଐତିହାସିକ ତଥ୍ୟ ଏପର୍ଯ୍ୟନ୍ତ ମିଳିନାହିଁ । ଦେବୀ ଯେ ଅତି ପୁରାତନ କାଳରୁ ପ୍ରତିଷ୍ଠିତା, ସେଥିରେ ସନ୍ଦେହ କରିବାର କିଛିନାହିଁ । କାରଣ, ଦେବୀ ନିକଟସ୍ଥ ପଞ୍ଚମୀ ଗଣେଶଙ୍କ ପ୍ରତିଷ୍ଠା ଯୁଗରୁ କଳିଙ୍ଗ-ପଞ୍ଚଦେବତାଙ୍କ ମଧ୍ୟରୁ ଅନ୍ୟତମ ରୂପେ ପୂଜା ପାଇ ଆସୁଥିଲେ । ମଗଧ ସମ୍ରାଟ୍ ଅଶୋକଙ୍କ ଆକ୍ରମଣ ପରେ କଳିଙ୍ଗର ଯେଉଁ ସାମାଜିକ, ଆର୍ଥିକ ଏବଂ ଆଧ୍ୟାତ୍ମିକ ପରିବର୍ତ୍ତନମାନ ଘଟିଲା, ସେଥିଯୋଗୁ ଚିରନ୍ତନ ପୂଜିତ ଦେବ-ଦେବୀମାନଙ୍କ ପୂଜା-ଉପାସନାରେ ଅନୁରୂପ ଶିଥିଳତା ମଧ୍ୟ ଦେଖା ଦେଇଥିଲା, ଫଳରେ ପୂର୍ବୋପାସିତ ଦେବ-ଦେବୀ ମଣ୍ଡଳ ସବୁ ଲୁକ୍କାୟିତ, ଅବହେଳିତ ତଥା ଅବଲୁପ୍ତ ଅବସ୍ଥା ପ୍ରାପ୍ତ ହୋଇଥିଲେ । ସିଦ୍ଧ-ଭୈରବୀ ମଧ୍ୟ ସେଥିରୁ ବାଦ ପଡ଼ି ନଥିଲେ । ତଥାପି ଚକ୍ରପୀଠ ଦେବୀଙ୍କ ମାହାତ୍ମ୍ୟ ଯୋଗେ ହେଉ ବା କାଳ ଚକ୍ରର ଆବର୍ତ୍ତନ ଯୋଗେ

ହେଉ ସମ୍ପୂର୍ଣ୍ଣ ବିଲୁପ୍ତ ନ ହୋଇ ଅପ୍ରକାଶ୍ୟ ଭାବେ ବହୁକାଳ ପର୍ଯ୍ୟନ୍ତ ଭୂଗର୍ଭରେ ତିଷ୍ଠି ରହି ଆସିଥିଲା । ପରବର୍ତ୍ତୀ କାଳରେ ଗିନା ଗାଙ୍ଗୁଲି ହୁଅନ୍ତୁ ବା ଅନ୍ୟ କେହି ଭକ୍ତ ହୁଅନ୍ତୁ, ଦେବୀପୀଠକୁ ପୁନରୁଦ୍ଧାର କରି ସେଠାରେ ପ୍ରତିଷ୍ଠା କରି ଆସିଛନ୍ତି । ଏଣୁ ମନେହୁଏ, ମନ୍ତୀଡ଼-ଭୈରବୀ ଏବେକାର କମ୍ବା ଶହେ ଦୁଇଶହ ବର୍ଷର ପ୍ରତିଷ୍ଠିତା ଦେବୀ ନୁହନ୍ତି, ଏ ବହୁ ବର୍ଷର ପୁରାତନ ସିଦ୍ଧଦେବୀ ରୂପେ ଉପାସିତା ହୋଇ ଆସିଛନ୍ତି । ଏତାଦୃଶ ଏକ ଜନମାନସର ଅଗୋଚର କଥାବସ୍ତୁକୁ ଆଧାର କରି ତା' ସମ୍ବନ୍ଧରେ ସମ୍ପୂର୍ଣ୍ଣ ନ ହେଲେ ସୁଦ୍ଧା ସ୍ଥୂଳ ଧାରଣା ଦେଇ ପାରିଥିବାରୁ ଲେଖକଙ୍କ ପ୍ରଚେଷ୍ଟା ଅତ୍ୟନ୍ତ ପ୍ରଶଂସନୀୟ ।

ଏ ସମ୍ବନ୍ଧରେ ଆହୁରି ସୂକ୍ଷ୍ମ ଗବେଷଣାର ପ୍ରୟୋଜନୀୟତା ରହିଛି । ଉତ୍ତର ପୁରୁଷଗଣ ତାହା ସମ୍ପୂର୍ଣ୍ଣ କରିବାରେ ଯତ୍ନବାନ୍ ହେଲେ ଏକ ଅବଲୁପ୍ତ ଇତିହାସର ପୁନରୁଦ୍ଧାର ହେବା ସଙ୍ଗେ ସଙ୍ଗେ ଯୁଦ୍ଧପୂର୍ବୀୟ କଳିଙ୍ଗ ଜନସାଧାରଣଙ୍କ ସାମାଜିକ ଜୀବନ ସମ୍ବନ୍ଧରେ ମଧ୍ୟ ବହୁ କଥା ଆଲୋକକୁ ଆସି ପାରନ୍ତା । ଯାହା ହେଉ, ଶ୍ରୀ ପାଣିଗ୍ରାହୀ ଏଥିପାଇଁ ଯେଉଁ ପ୍ରାଥମିକ ପ୍ରଚେଷ୍ଟାର ନିଦର୍ଶନ ସ୍ୱରୂପ 'ସିଦ୍ଧ-ଭୈରବୀ' ପ୍ରକାଶ କରିବାକୁ ଯାଇଛନ୍ତି, ସେଥି ଯୋଗୁଁ ସେ ନିଶ୍ଚିତ ଭାବେ ପ୍ରଶଂସାର୍ହ । ଭୈରବୀଙ୍କ ସମ୍ବନ୍ଧରେ ମୋଟା ମୋଟି ଧାରଣା ଦେବାରେ ଏହି ଲେଖାଟି ଅତ୍ୟନ୍ତ ସହାୟକ । ଆଶା, ବହିଟି ଜନ ସମାଜରେ ବିଶେଷ ସମାଦର ଲାଭ କରିବ ।

ଡ଼: ବେଣୀମାଧବ ପାଢ଼ୀ

## ଆମ ତରଫରୁ ପଦେ……

ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ବିକାଶ ତଥା ଅଭିବୃଦ୍ଧି ଉଦ୍ଦେଶ୍ୟରେ ଗଠିତ ଫଲ୍‌ଗୁ ସାହିତ୍ୟ ସଂସଦ ତା'ର ସଭ୍ୟମାନଙ୍କ ସୃଷ୍ଟିର ପ୍ରସାର ନିମିତ୍ତ ପ୍ରକାଶନ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଛି । ଏହି ପ୍ରକାଶନ ସଂସଦର ପ୍ରଥମ ପ୍ରଚେଷ୍ଟା ।

ଏ ପୁସ୍ତିକାର ଲେଖକ ଶ୍ରୀ ରଘୁନନ୍ଦନ ପାଣିଗ୍ରାହୀ କବି, ଗାଳ୍ପିକ ତଥା ପ୍ରାବନ୍ଧିକ ଭାବେ ଓଡ଼ିଆ ପାଠକ ମହଲରେ ଉଣାଅଧିକେ ସୁପରିଚିତ । ତାଙ୍କର ଅନେକ ରଚନା ଝାନ୍ତିକ, ନୟୁତ, ଅନ୍ୱେଷ, କଥା ଓ କବିତା, ଭାଗ୍ୟ ରବି, ରୂପାୟନ, ସମବାୟ ସମାଚାର, ଦୈନିକ ଆଶା, ପ୍ରଜାତନ୍ତ୍ର ଓ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇ ଆସିଛି । ଏହି ପୁସ୍ତକର କିୟଦଂଶ ମଧ୍ୟ "ଓଡ଼ିଶାର ଦେବ ଦେବୀ" ସଂକଳନର କଳେବର ମଣ୍ଡନ କରିଥିଲା । ଏହା ତାହାର ପୂର୍ଣ୍ଣାଙ୍ଗ ପ୍ରକାଶ କହିଲେ ଚଳେ ।

ଓଡ଼ିଶାର ବିଖ୍ୟାତ ଦେବୀପୀଠ ମନ୍ତ୍ରିଡ଼ି-ଭୈରବୀଙ୍କ ମାହାତ୍ମ୍ୟ ପ୍ରଚାର ତଥା ଏହି ପୀଠ ପ୍ରତି ଅନ୍ୟାନ୍ୟ ଅଞ୍ଚଳବାସୀଙ୍କ ଦୃଷ୍ଟି ଆକର୍ଷଣ କରିବା ଦିଗରେ ଏଇ ପୁସ୍ତିକାଟି ସହାୟକ ହେବ ବୋଲି ଆଶା ।

**ଫଲ୍‌ଗୁ ସାହିତ୍ୟ ସଂସଦ**

# ନିଜ କଥା

ପିଲାଦିନରୁ ଗଳ୍ପ, କବିତା, ପ୍ରବନ୍ଧ ଲେଖିବାର ପ୍ରୟାସ କରୁଥିଲେ ସୁଦ୍ଧା ମୋର ବାଲ୍ୟବନ୍ଧୁ ଶ୍ରୀ ସୂର୍ଯ୍ୟନାରାୟଣ ଦାସଙ୍କ ପ୍ରେରଣାରୁ ମୋର ଲେଖନୀ ନୂଆ ପ୍ରଖର ହୋଇପାରିଛି । ଓଡ଼ିଶାର ଦେବାଦେବୀ ପାଇଁ ଶ୍ରୀ ବ୍ରଜମୋହନ ମହାନ୍ତି ମନ୍ତ୍ରିଡି-ଭୈରବୀଙ୍କ ସମ୍ପର୍କରେ ଗୋଟିଏ ପ୍ରବନ୍ଧ ଲେଖିବାକୁ କହିଲେ । ମୁଁ ହଁ ମାରି ଦେଇ ଭୁଲ ପଡ଼ିଥିଲି । କିନ୍ତୁ ବନ୍ଧୁ ଶ୍ରୀ ଦାସ ମୋତେ ବାଧ୍ୟ କରି ମନ୍ତ୍ରିଡ଼ିରୁ ତଥ୍ୟ ସଂଗ୍ରହ କରିବା ପାଇଁ ପଠାଇଥିଲେ । ତାପରେ ପ୍ରବନ୍ଧଟି ଲେଖି ମୋର ଭାଇ ଅଧ୍ୟାପକ ବାଇଲଡ଼ୁ ପାଣିଗ୍ରାହୀଙ୍କୁ ଦେଖାଇଥିଲି । ଶ୍ରୀ ସୂର୍ଯ୍ୟନାରାୟଣ ଦାସ ପ୍ରବନ୍ଧଟିକୁ ସଜାଇ ଓଡ଼ିଶାର ଦେବ ଦେବୀରେ ପ୍ରକାଶ କରିଥିଲେ । ତାପରେ ଦୈନିକ ଆଶା, ପ୍ରଜାତନ୍ତ୍ରରେ ମଧ୍ୟ ଏହାର ଅଂଶ ବିଶେଷ ବିଭିନ୍ନ ସମୟରେ ପ୍ରକାଶ ପାଇଛି ।

ଅଳ୍ପଦିନ ତଳେ ମୋର ଶାଳକଙ୍କ ପୁଅ ବ୍ରତ ମନ୍ତ୍ରିଡି ପୀଠରେ ଅନୁଷ୍ଠିତ ହୋଇଥିଲା । ସେତେବେଳେ ମୁଁ ପାରଳାଖେମୁଣ୍ଡି ନିକଟସ୍ଥ ରାୟଗଡ଼ରେ ଚାକିରୀ କରୁଥିଲି । ମା'ଙ୍କ ବିଷୟରେ ଲେଖିବା ପାଇଁ ଶ୍ରୀ ସଦାନନ୍ଦ ପାଣିଗ୍ରାହୀଙ୍କ ସହ ପରାମର୍ଶ କରି ମନରେ ସ୍ମରଣ କରିଥିଲି ଯେ ମୋର ବ୍ରହ୍ମପୁର ବଦଳି ହୋଇଗଲେ ବହିଟି ଲେଖିବି । ଯାହା ହେଉ ମା'ଙ୍କ ଆଶୀର୍ବାଦରୁ ମୋର ବ୍ରହ୍ମପୁର ବଦଳି ହୋଇଗଲା ଏବଂ ତା'ଙ୍କର ପ୍ରେରଣା ଓ ଆଶୀର୍ବାଦରୁ ବହିଟି ସଂପୂର୍ଣ୍ଣ ହୋଇପାରିଛି । ଏଥିର ସଂସ୍କୃତ ଶ୍ଳୋକଗୁଡ଼ିକ ସଂଶୋଧନ କରି ମୁଖବନ୍ଧ ଦେଇଥିବାରୁ ଡ: ଶ୍ରୀ ବେଣୀମାଧବ ପାଢ଼ୀଙ୍କ ପାଖରେ ମୁଁ ଚିରଋଣୀ ।

ତଥ୍ୟ ଯୋଗାଇବାରେ ଶ୍ରୀ ସାରଥି କର, ଶ୍ରୀ ସଦାନନ୍ଦ ପାଣିଗ୍ରାହୀ ଓ ଅଧ୍ୟାପକ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତିଙ୍କ ସାହାଯ୍ୟ ଚିର ସ୍ମରଣୀୟ । ନୟୂତର ସମ୍ପାଦକ ଶ୍ରୀ ଘନକୃଷ୍ଣ ମିଶ୍ର ବ୍ଲକ ଯୋଗାଇ ଦେଇଥିବାରୁ ତାଙ୍କୁ ଧନ୍ୟବାଦ ନଦେଇ ରହିପାରୁନି । ଫଲ୍‌ଗୁ ସାହିତ୍ୟ ସଂସଦ, ମୁଦ୍ରକ-ଲକି ପ୍ରିଣ୍ଟର୍ସ ଏବଂ ବହିଟିର ପ୍ରେରଣା ଦାତା ବନ୍ଧୁ ଶ୍ରୀ ସତ୍ୟନାରାୟଣ ମହାପାତ୍ରଙ୍କୁ ମଧ୍ୟ ଭୁଲିବାର ନୁହେଁ । ଶେଷରେ ମା'ଙ୍କର ଆଶୀର୍ବାଦ ସଙ୍ଗେ ସଙ୍ଗେ ମୋର ବୋଉଙ୍କର ( ସେପାରିର ) ଆତ୍ମାରୁ ପାଇଥିବା ପ୍ରେରଣା ପାଇଁ ଯୋଡ଼ ହସ୍ତରେ ପ୍ରଣାମ ଜଣାଇ ରହୁଛି ।

ଲେଖକ, ଲେଖିକା ଏବଂ ପାଠକ ବୃନ୍ଦ ତ୍ରୁଟି ମାର୍ଜନା ପୂର୍ବକ ମା'ଙ୍କର ମାହାତ୍ମ୍ୟକୁ ପ୍ରସାର କରିବା ସଙ୍ଗେ ସଙ୍ଗେ ପୀଠର ଉତ୍ତରୋତ୍ତର ଉନ୍ନତି ପାଇଁ ଯଥାଯଥ ସାହାଯ୍ୟ କରିବେ, ଏହାହିଁ ମୋର ପ୍ରାର୍ଥନା ।

‘‘କାୟେନବାଚ୍ଚ ମନସୈନ୍ଦ୍ରିୟୈର୍ବା   ବୁଦ୍ଧ୍ୟାତ୍ମନାବା ପ୍ରକୃତେଃ ସ୍ୱଭାବାତ୍
କରୋମି ଯଦ୍ ଯଦ୍ ସକଳଂପରସ୍ମୈ   ନାରାୟଣାୟେତି ସମର୍ପୟାମି’’

ଲେଖକ

ଓଁ

# ଶ୍ରୀ ସିଦ୍ଧ ଭୈରବ୍ୟୈ ନମଃ

## ଜଣାଣ

ବନ୍ଦେ ସିଂହାରୂଢ଼ାଂ ଦେବୀଂ ଖଡ୍‌ଗ ଖର୍ପର ଧାରିଣୀଂ ।
ଦୁର୍ଗତି ନାଶିନୀଂ ଦୁର୍ଗାଂ ଆଦ୍ୟାଶକ୍ତିଂ ସନାତନୀଂ ॥
ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ ।
ସର୍ବସ୍ୟାର୍ତ୍ତି ହରେ ଦେବି ନାରାୟଣି ନମୋସ୍ତୁତେ ॥

## ଧ୍ୟାନଂ

ଉଦ୍ୟଦ୍‌ଭାନୁସହସ୍ରକାନ୍ତିମରୁଣ କ୍ଷୌମାଂ ଶିରୋମାଳିକାଂ
ରକ୍ତାଲିପ୍ତପୟୋଧରାଂ ଜପବଟୀଂ ବିଦ୍ୟାମଭୀତିଂ ବରମ୍ ।
ହସ୍ତାବ୍ଜୈର୍ଦଧତୀଂ ତ୍ରିନେତ୍ରବିଲସଦ୍‌ବକ୍ତ୍ରାରବିନ୍ଦଶ୍ରିୟଂ ।
ଦେବୀଂ ବଦ୍ଧହିମାଂଶୁରତ୍ନମୁକୁଟାଂ ବନ୍ଦେ ସମନ୍ଦସ୍ମିତାମ୍ ॥

## ପୂଜାମନ୍ତ୍ର

ଓଁ ଅମ୍ବେ ଅମ୍ବିକେ ଅମ୍ବାଳକେ
ନମାନୟତି କଶ୍ଚନ, ସ୍ୱସସ୍ତ୍ୟ ସ୍ୱକଃ
ସୁଭଦ୍ରକାଂ କାମ୍ପିଲ୍ୱବାସିନୀ ସ୍ୱାହା ।
ଇଦଂ ଭୈରବ୍ୟୈ ଚ-ଦୁର୍ଗାୟୈ ॥

× × × ×

## ॥ ଶ୍ରୀ ତ୍ରିପୁରଭୈରବୀ ମନ୍ତ୍ରାଃ ॥

**ଋଷ୍ୟାଦିନ୍ୟାସଃ**—ଓଁ ଅସ୍ୟ ଶ୍ରୀ ତ୍ରିପୁର ଭୈରବୀ ମନ୍ତ୍ରସ୍ୟ, ଦକ୍ଷିଣା ମୂର୍ତ୍ତି ଋଷିଃ, ପଂକ୍ତିଶ୍ଛନ୍ଦଃ, ତ୍ରିପୁର ଭୈରବୀ ଦେବତା, ହକାରେ ବୀଜଂ, ଈଂ ଶକ୍ତିଃ, ରୈଃ କୀଳକଂ, ମମ ସର୍ବଭୟବିଧ୍ୱଂସନାର୍ଥେ ବିନିଯୋଗଃ ।

**କରାଙ୍ଗ ନ୍ୟାସଃ**—ହସ୍ରାଂ ଅଙ୍ଗୁଷ୍ଠାଭ୍ୟାଂ ନମଃ । ହସ୍ରୀଂ ତର୍ଜନୀଭ୍ୟାଂ ସ୍ୱାହା, ହସ୍ରୈଂ ଅନାମିକାଭ୍ୟାଂ ହୁଂ । ହସ୍ରୌଂ କନିଷ୍ଠାଭ୍ୟାଂ ବୌଷଟ୍, ହସ୍ରଃ ମଧ୍ୟମାଭ୍ୟାଂ ବଷଟ୍, ହସ୍ରଃ କରତଳକର ପୃଷ୍ଠାଭ୍ୟାଂ ଫଟ୍ । ଏବମଙ୍ଗନ୍ୟାସଃ, ଅସ୍ତ୍ରାୟ ଫଟ୍ ନେତ୍ରତ୍ରୟାୟ ବୌଷଟ୍ ଚ ଇତି ବିଶେଷଃ ।

**ମନ୍ତ୍ରଃ**—ହସ୍ରୈଂ ହସକଲ୍ରୀଂ ହସ୍ରୈଂ ।
**ବୀଜ ମନ୍ତ୍ରଃ**—ହସ୍ରୈଂ ।
**ଜପମନ୍ତ୍ରଃ**—ଓଁ ହସ୍ରୌଂ ତ୍ରିପୁର ଭୈରବ୍ୟୈ ନମଃ ।

---

# ଶ୍ରୀ ଭୈରବୀ କବଚମ୍

## ଈଶ୍ୱର ଉବାଚ

ଶୃଣୁ ପାର୍ବତି ବକ୍ଷ୍ୟାମି ସୁନ୍ଦରି ପ୍ରାଣବଲ୍ଲଭେ
ତ୍ରୈଲୋକ୍ୟବିଜୟଂ ନାମ କବଚଂ ମନ୍ତ୍ରବିଗ୍ରହମ୍ ।

ଓଁ ଅସ୍ୟ ଶ୍ରୀ ଭୈରବୀ କବଚସ୍ୟ, ଦକ୍ଷିଣାମୂର୍ତ୍ତିର୍ଋଷିଃ, ବିରାଟ୍ ଛନ୍ଦଃ, ଜଗଦ୍ଧାତ୍ରୀ ବାଳଭୈରବୀ ଦେବତା, ହକାରେ ବୀଜଂ, ସୌଂ ଶକ୍ତିଃ, ରୈଂ କୀଳକଂ, ମମାଭୀଷ୍ଟସିଦ୍ଧୟେ ପଠନେ ବିନିଯୋଗଃ ।

ଅଧରେ ବିନ୍ଦୁମାନାଦ୍ୟଃ କାମଃ ଶକ୍ତୀ ଶଶୀଯୁତଃ
ଭୃଗୁର୍ମନୁସ୍ୱରଯୁତଃ ସର୍ଗୀ ବୀଜତ୍ରୟାତ୍ମିକା
ବାଳୈଷା ମେ ଶିରଃ ପାତୁ ବିନ୍ଦୁନାଦଯୁତାପି ସା ।
ଭାଲଂ ପାତୁ କୁମାରୀ ଚ ସର୍ଗହୀନା କୁମାରିକା
ଦୃଶୌ ପାତୁ ଚ ବାଗ୍‌ବୀଜଂ କର୍ଣ୍ଣ ଯୁଗ୍ମଂ ସଦାବତୁ ।
କାମବୀଜଂ ସଦା ପାତୁ ଘ୍ରାଣଯୁଗ୍ମଂ ସଦାବତୁ

ସରସ୍ୱତୀପ୍ରଦା ବାଳା ଜିହ୍ୱାଂ ପାତୁ ଶୁଚିପ୍ରଭା ।
ହସ୍ରୈଂ କଣ୍ଠଂ ହସ୍‌କଶ୍ରୀଂ ସ୍କନ୍ଧୌ ପାତୁ ହସ୍ରୌ ଭୁଜୌ
ପଞ୍ଚମୀ ଭୈରବୀ ପାତୁ କରୌ ହସ୍‌ରୈଂ ସଦାବତୁ ।
ହୃଦୟଂ ହସ୍‌କଲଶ୍ରୀଂ ବକ୍ଷଃ ପାତୁ ହସ୍‌ରୌଃ ସ୍ତନୌ
ପାତୁ ମାଂ ଭୈରବୀ ଦେବୀ ଚୈତନ୍ୟରୂପିଣୀ ମମ ।
ହସ୍ରୈଂ ପାତୁ ସଦା ପାର୍ଶ୍ୱଯୁଗ୍ମଂ ହସ୍‌କଲଶ୍ରୀଂ ସଦା
କୁକ୍ଷିଂ ପାତୁ ହସ୍ରୌର୍ମଧ୍ୟଂ ଭୈରବୀ ଭୁବି ଦୁର୍ଲ୍ଲଭା ।
ଐଂ ଈଂ ଔଂ ମେ ମଧ୍ୟଦେଶଂ ବୀଜବିଦ୍ୟା ସଦାବତୁ
ହସ୍ରୈଂ ପୃଷ୍ଠଂ ସଦା ପାତୁ ନାଭିଂ ହସ୍‌କଲଶ୍ରୀ ତଥା ।
ପାତୁ ହସ୍ରୌଃ କଟିଦେଶଂ ଷଟ୍‌କୂଟା ଭୈରବୀ ମମ
ହସ୍‌ରୈଂ ସକ୍ଥିନୀ ପାତୁ ହସ୍‌କଲଶ୍ରୀଂ ସଦାବତୁ ।
ଗୁହ୍ୟଗ୍ୟଦେଶଂ ହସ୍ରୌଃ ପାତୁ ଜାନୁନୀ ଭୈରବୀ ମମ
ସମ୍ପତ୍ପ୍ରଦା ସଦା ପାତୁ ହସ୍ରୈଂ ଜଙ୍ଘେ ହସ୍ରୀଂ ପଦମ୍ ।
ପାତୁ ହସ୍ରୌଃ ସର୍ବଦେହଂ ଭୈରବୀ ସର୍ବଦାବତୁ
ହସୈଂ ମାମବତୁ ପ୍ରାଚ୍ୟାଂ ହସ୍‌କଲଶ୍ରୀଂ ପାବକେଽବତୁ ।
ହସୌଃ ମେ ଦକ୍ଷିଣେ ପାତୁ ଭୈରବୀ ଚଣ୍ଡମାସ୍ଥିତା
ହ୍ସ୍ରାଂ କ୍ଲାଂ ବ୍ଲୂଂ ମାଂ ସଦା ପାତୁ ନୈର୍ଋତ୍ୟାଂ ଚଣ୍ଡଭୈରବୀ ।
ହସୈଂ ହସ କଲଶ୍ରୀଂ ହସ୍‌ରୌଃ ପଶ୍ଚିମେ ପାତୁ ଭୈରବୀ
ହ୍ରୀଂ ହ୍ରୀଂ ହ୍ରୀଂ ପାତୁ ବାୟବ୍ୟାଂ ହୂଂ ହୂଂ ପାତୁ ସଦୋତ୍ତରେ ।
ହ୍ସ୍ରାଂ ହ୍ସ୍ରାଂ ପାତୁ ସଦୈଶାନ୍ୟେ ଦକ୍ଷିଣେ କାଳିକାଽବତୁ
ଊର୍ଦ୍ଧ୍ୱଂ ପ୍ରାଗୁକ୍ତ ବୀଜାନି ରକ୍ଷନ୍ତୁ ମାମଧଃସ୍ଥଳେ ।
ଦିଗ୍‌ବିଦିକ୍ଷୁ ସ୍ୱାହା ପାତୁ କାଳିକା ଖଡ୍‌ଗଧାରିଣୀ
ଓଁ ହ୍ସ୍ରାଂ ସ୍ତ୍ରୀଂ ହୂଂ ଫଟ୍ ସା ତାରା ସର୍ବତ୍ର ମାଂ ସଦାବତୁ ।
ସଙ୍ଗ୍ରାମେ କାନନେ ଦୁର୍ଗେ ତୋୟେ ତରଙ୍ଗ ଦୁସ୍ତରେ
ଖଡ୍‌ଗକର୍ତ୍ତ୍ରୀଧରା ସୋଗ୍ରା ସଦା ମାଂ ପରିରକ୍ଷତୁ ।

ଇତି ତେ କଥିତଂ ଦେବ ସାରାତ୍ ସାରତରଂ ମହତ୍
ତ୍ରୈଲୋକ୍ୟବିଜୟଂ ନାମ କବଚଂ ପରମାଦ୍ଭୁତମ୍ ।
ଯଃ ପଠେତ୍ ପ୍ରୟତୋ ଭୂତ୍ୱା ପୂଜାୟାଃ ଫଳମାପ୍ନୁୟାତ୍
ସ୍ପର୍ଦ୍ଧାମୁଦ୍ଧୂୟ ଭବନେ ଲକ୍ଷ୍ମୀର୍ବାଣୀ ବସେତ୍ତତଃ ।

ଯଃ ଶତ୍ରୁଭୀତୋ ରଣକାତରଶ୍ଚ ବା, ଭୀତୋବନେ ବା ସଲିଳାଳୟେ ବା
ବାଦେ ସଭାୟାଂ ପ୍ରତିବାଦିନୋ ବା, ରକ୍ଷଃ ପ୍ରକୋପାତ୍ ଗ୍ରହସଙ୍କୁଳାଦ୍ବା ।
ପ୍ରଚଣ୍ଡବାତାକ୍ଷମନାଚ ଭୀତୋ, ଗୁରୋଃ ପ୍ରକୋପାଦପି କୃଚ୍ଛ୍ରସାଧ୍ୟାତ୍
ଅଭ୍ୟର୍ଚ୍ଚ୍ୟ ଦେବୀଂ ପ୍ରପଠେତ୍ତ୍ରିସନ୍ଧ୍ୟଂ, ସ ସ୍ୟାନ୍ମହେଶପ୍ରତିମୋ ଜୟୀ ଚ ।

ତ୍ରୈଲୋକ୍ୟବିଜୟଂ ନାମ କବଚଂ ମନ୍ମୁଖୋଦିତଂ
ବିଲିଖ୍ୟ ଭୂର୍ଜଗୁଟିକାଂ ସ୍ୱର୍ଣ୍ଣସ୍ଥାଂ ଧାରୟେଦ୍ ଯଦି
କଣ୍ଠେ ବା ଦକ୍ଷିଣେ ବାହୌ ତ୍ରୈଲୋକ୍ୟ ବିଜୟୀ ଭବେତ୍ ।
ତଦ୍‌ଗାତ୍ରଂ ପ୍ରାପ୍ୟ ଶସ୍ତ୍ରାଣି ଭବନ୍ତି କୁସୁମାନି ଚ
ଲକ୍ଷ୍ମୀଃ ସରସ୍ୱତୀ ତସ୍ୟ ନିବସେଦ୍ ଭବନେ ସୁଖେ ।
ଏତତ୍ କବଚ ମଜ୍ଞାତ୍ୱା ଯୋ ଜପେତ୍ ଭୈରବୀଂ ପରାମ୍
ବାଳାଂ ବା ପ୍ରଜପେଦ୍‌ବିଦ୍ୱାନ୍ ଦରିଦ୍ରୋ ମୃତ୍ୟୁମାପ୍ନୁୟାତ୍ ।

ଇତି ରୁଦ୍ରଯାମଳେ ଦେବୀଶ୍ୱର ସମ୍ବାଦେ
ତ୍ରୈଲୋକ୍ୟବିଜୟଂ ନାମ ଭୈରବୀ କବଚଂ ସମାପ୍ତମ୍ ।



# ଆଦ୍ୟଶକ୍ତି

"ଯାଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।
ଯାଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ॥"

ଯୁଗେ ଯୁଗେ ମାନବ ସମାଜ ଆସୁରିକ ଶକ୍ତି, ରାଜସିକ ତଥା ତାମସିକ ପ୍ରଭାବ ଏବଂ ଦୁଷ୍ଟ ବୃତ୍ତିର କବଳରୁ ମୁକ୍ତି ପାଇବା ପାଇଁ ବ୍ୟାକୁଳ ମନୋଭାବ ପୋଷଣ କରିଛି । ସେ ଖୋଜିଛି ମାନବୋତ୍ତର ଜୀବନ ପାଇଁ ପଥ ଓ ସତ୍ୟ ସନ୍ଧାନର ରଥ । ସେଥିପାଇଁ ସେ ଆଶ୍ରୟ ନେଇଛି ଦୈବୀଶକ୍ତି-ଉପାସନା ବିଧି ଉପରେ, ଯାହାକି ଆମ ଶାସ୍ତ୍ରରେ ସ୍ୱୀକୃତ । ଅକଳ୍ପିତ ଶକ୍ତିର ଆଧାର, ଆଧ୍ୟାତ୍ମିକ ପ୍ରବାହର ଉତ୍ସ ଓ ଆଧିଦୈବିକ ପ୍ରକଳ୍ପନାର ଧାର୍ଯ୍ୟରୂପେ ମହାମାୟା ଯୁଗେ ଯୁଗେ ସ୍ୱୀକୃତା ଓ ପୂଜିତା ।

ହିନ୍ଦୁଧର୍ମର ଅତି ଗଭୀର ପ୍ରଦେଶକୁ ଦୃଷ୍ଟିପାତ କଲେ ଆମେ ଅନେକ ଦେବଦେବୀଙ୍କ ଉପାସନା ବିଧିର ନମୁନା ପାଇଥାଉଁ । କିନ୍ତୁ ସମସ୍ତ ଦେବଦେବୀ ଉପାସନା ମଧ୍ୟରୁ ଅମ୍ବିକା ବା ଦୁର୍ଗା ଉପାସନା ସବୁଠାରୁ ଯେ ଶ୍ରେଷ୍ଠ ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ । କାରଣ ସେ ଆଦ୍ୟଶକ୍ତି ଏବଂ ସମଗ୍ର ଭବରେ ବିଶ୍ୱ ଶକ୍ତିର ମୂଳ ଉତ୍ସ ଅଟନ୍ତି ।

ବହୁ ପ୍ରାଚୀନ କାଳରୁ ଏହି ଶକ୍ତି ଉପାସନା ହିନ୍ଦୁ ସଂସ୍କୃତି ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଶକ୍ତି ଉପାସନାର ପ୍ରାଚୀନତା ସମ୍ପର୍କରେ ଐତିହାସିକ ତଥା ଦାର୍ଶନିକମାନେ ଏ ଯାବତ୍ ଏକ ସ୍ଥିର ନିଷ୍ପତ୍ତିରେ ପହଞ୍ଚି ପାରିନାହାନ୍ତି । କେତେକଙ୍କ ମତରେ ଏହା ବେଦର ପରବର୍ତ୍ତୀ ଯୁଗରେ ହିନ୍ଦୁଧର୍ମ ମଧ୍ୟକୁ ଆନୀତ ହୋଇଅଛି । ଆଉ କେତେକଙ୍କ ମତରେ ଏହା ବୌଦ୍ଧ ତଥା ଜୈନତନ୍ତ୍ରରୁ ଗୃହୀତ ହୋଇଅଛି । ଅନ୍ୟ କେତେକ

ସୁପ୍ରତିଷ୍ଠିତ ଐତିହାସିକ ତଥା ଡକ୍ଟର ଡ. ସି. ସରକାର, ସାଉଜନ୍ ମାର୍ଶାଲ ପ୍ରମୁଖ ମତବ୍ୟକ୍ତ କରନ୍ତି ଯେ, ଆର୍ଯ୍ୟମାନଙ୍କର ବୈଦିକ ଧାରା ପ୍ରଚଳନର ବହୁ ପୂର୍ବରୁ ଭାରତରେ ଶାକ୍ତ ଧର୍ମର ପ୍ରଚଳନ ହୋଇଥିଲା । କାଳକ୍ରମେ ଆର୍ଯ୍ୟଗଣ ଶକ୍ତି ଉପାସନାକୁ ଶକ୍ତିବାଦରେ ପରିଣତ କରି ନିଜ ଧର୍ମ ତଥା ସଭ୍ୟତା ମଧ୍ୟରେ ଗ୍ରହଣ କରିନେଲେ । ଏହି ମତବାଦଟି ହିଁ ସର୍ବଜ ଗୃହୀତ ।

ପୌରାଣିକ ଶାସ୍ତ୍ରରେ ଏହାର ସୂଚନା ବହୁଳ ପରିମାଣରେ ମିଳିଥାଏ । ମୁନିଋଷିଗଣ ଶକ୍ତି ଉପାସନାକୁ ସର୍ବଶ୍ରେଷ୍ଠ ଉପାସନା ରୂପେ ପ୍ରତିପାଦିତ କରିଛନ୍ତି । ଏହି ସତ୍ୟଦ୍ରଷ୍ଟା ଋଷିଗଣ ଯଦି ଶକ୍ତିକୁ ସ୍ୱୀକାର କରି ନଥାନ୍ତେ, ତେବେ ବେଦମାତା ଗାୟତ୍ରୀଙ୍କୁ ପାଇବାର ସଫଳତା ହାସଲ କରିପାରି ନଥାନ୍ତେ । ଅନ୍ୟ ଏକ ଦୃଷ୍ଟାନ୍ତରୁ ଏହାର ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇପାରିବ । ଦେବଗଣ ଯେତେବେଳେ ନିଜ ନିଜର ଶକ୍ତି ଦେଇ ଆତ୍ମ-ବଡିମା କଲେ, ସେହି ସମୟରେ ମହାଶକ୍ତି ଉମାରୂପିଣୀ ହୋଇ ସେମାନଙ୍କ ଗର୍ବ ଖଣ୍ଡନ କରିଥିଲେ । ସେହିପରି ଋକ ସଂହିତା, ରୁଧାତନ୍ତ୍ର ତଥା କାତ୍ୟାୟନୀ ତନ୍ତ୍ରରେ ମଧ୍ୟ ଏହାର ଦୃଷ୍ଟାନ୍ତ ପ୍ରଚୁର ମିଳିଥାଏ । ଏତଦ୍‌ବ୍ୟତୀତ ଶକ୍ତିତନ୍ତ୍ରରେ ଉଲ୍ଲେଖ ଅଛି —

"ଲକ୍ଷ୍ମୀ ପ୍ରଦାନ ସମୟେ ନବବିଦ୍ରୁମାଭାଂ
ବିଦ୍ୟା ପ୍ରଦାନ ସମୟେ ଶରଦିନ୍ଦୁ ଶୁଭ୍ରାଂ
ବିଦ୍ୱେଷୀବର୍ଗ ବିଜୟେ ହରି ନୀଳବର୍ଣ୍ଣା
ମମ୍ବାଂ ତ୍ରିଲୋକଜନନୀଂ ପ୍ରଜନୀଂ ପ୍ରପଦ୍ୟେ ।"

ଅର୍ଥାତ୍—

"ସେହି ମହାଶକ୍ତି ଧନ ଦେବାବେଳେ ଲକ୍ଷ୍ମୀରୂପିଣୀ ନୂତନ ପ୍ରବାଳବର୍ଣ୍ଣା ହୋଇଥାନ୍ତି । ସେହି ମହାଶକ୍ତି ବିଦ୍ୟା ପ୍ରଦାନ ସମୟେ ଶାରଦଶଙ୍ଖଶପରି ଶୁଭ୍ରବର୍ଣ୍ଣା ହୁଅନ୍ତି । ଶତ୍ରୁବର୍ଗ ଦଳ ଜାବାନଳ ରୂପିଣୀ ବେଳେ ନୀଳବର୍ଣ୍ଣ । ଦେଖାଯାନ୍ତି ଏପରି ତ୍ରିଲୋକ ଜନନୀ ଜଗଦମ୍ବାଙ୍କୁ ଓ ପ୍ରଜନୀଙ୍କୁ ଶରଣ ଯାଉଛି ।"

## ମାତୃଶକ୍ତି

ଦେବୀ ପୁରାଣ ଓ ଶକ୍ତି ମାହାତ୍ମ୍ୟ ଇତ୍ୟାଦି ଶାସ୍ତ୍ର ଅଧ୍ୟୟନ କଲେ ଜଣାଯାଏ ଯେ, ବ୍ରହ୍ମାଙ୍କ ପୁତ୍ର 'ଦକ୍ଷ' ପବିତ୍ର ଗଙ୍ଗା ନଦୀ କୂଳରେ ଯଜ୍ଞ କରିଥିଲେ । ଯଜ୍ଞକୁ ଶିବଙ୍କ ବ୍ୟତୀତ ଅନ୍ୟ ସମସ୍ତ ଦେବଦେବୀଙ୍କୁ ନିମନ୍ତ୍ରଣ କରିଥିଲେ ଫଳରେ ଜଗନ୍ମାତା 'ପାର୍ବତୀ' ଅପମାନ ଜର୍ଜରିତା ହୋଇ ଯଜ୍ଞ ସ୍ଥଳକୁ ଯାଇ ସ୍ୱାମୀଙ୍କୁ ନିମନ୍ତ୍ରଣ କରାନଯିବା ବିଷୟରେ ପିତାଙ୍କୁ ପ୍ରଶ୍ନ କରିଥିଲେ ଏବଂ ସ୍ୱାମୀ ନିନ୍ଦା ଅସହ୍ୟ ହେତୁ ନିଜକୁ ଅଗ୍ନି ପ୍ରଜ୍ୱଳିତ ହୋମ କୁଣ୍ଡରେ ସମର୍ପିତ କରିଦେଇଥିଲେ । ଜଗତ୍ ପିତା ଈଶ୍ୱର ଧ୍ୟାନ-ବଳରେ ସମସ୍ତ ବିଷୟ ଅବଗତ ହୋଇଥିଲେ । ଗଗନ ପବନ ପ୍ରକମ୍ପିତ କରି ଡମ୍ବରୁ ବାଜି ଉଠିଲା । ରୌଦ୍ର ରୂପଧାରଣ ପୂର୍ବକ ଯଜ୍ଞ ସ୍ଥଳରେ ପହଞ୍ଚି ଶ୍ୱଶୁର ଦକ୍ଷଙ୍କୁ ଅଗ୍ନି କୁଣ୍ଡରେ ନିକ୍ଷେପ କଲେ । ପରେ ଅଗ୍ନିକୁଣ୍ଡରୁ ଅର୍ଦ୍ଧଦଗ୍ଧା ପାର୍ବତୀଙ୍କୁ ଉଦ୍ଧାର କରି ତାଣ୍ଡବ ନୃତ୍ୟ କରିଥିଲେ । ଭୟଭୀତ ଦେବଗଣ ସୃଷ୍ଟି ରକ୍ଷା ନିମନ୍ତେ ପରମେଶ୍ୱର ବିଷ୍ଣୁଙ୍କୁ ପ୍ରାର୍ଥନା କଲେ । ଅନନ୍ତଶାୟୀ ବିଷ୍ଣୁ ସୃଷ୍ଟିର ସ୍ଥିତି ବଜାୟ ରଖିବା ଉଦ୍ଦେଶ୍ୟରେ ଦେବୀ ପାର୍ବତୀଙ୍କ ଶରୀରକୁ ଖଣ୍ଡ ବିଖଣ୍ଡ କରି ଈଶ୍ୱରଙ୍କ କ୍ରୋଧଶାନ୍ତ କରିବା ସଙ୍ଗେ ସଙ୍ଗେ ସୃଷ୍ଟିକୁ ଧ୍ୱଂସ ମୁଖରୁ ରକ୍ଷା କରିଥିଲେ । ସେହିଦିନଠାରୁ ଦେବୀଙ୍କ ବିଚ୍ଛୁରିତ ଦେହାଂଶ ବିଭିନ୍ନ ସ୍ଥାନରେ ପଡି ମାତୃଶକ୍ତି ତଥା ଦେବୀପୀଠ ରୂପେ ପୂଜା ପାଉଛନ୍ତି ଯଥା-ପାଦ ଖଣ୍ଡକୁ "ବିମଳା ବା ଭୈରବୀ ପୀଠ", ଯୋନି ଖଣ୍ଡକୁ "କାମାକ୍ଷୀ", ସ୍ତନ ଖଣ୍ଡକୁ "ତାରିଣୀ", ମୁଖ ମଣ୍ଡଳକୁ "କାଳିକା" ଇତ୍ୟାଦି ମାତୃଶକ୍ତି ରୂପେ ପୂଜା କରାଯାଉଅଛି ।

## ଭୈରବୀଙ୍କର ଉତ୍ପତ୍ତି

ଦେବୀଙ୍କ ଉତ୍ପତ୍ତିର କାଳ ଅତି ପ୍ରାଚୀନ । ଏହି ସମ୍ପର୍କରେ ମନୀଷୀମାନଙ୍କର ଐତିହାସିକ ତଥ୍ୟ ଗ୍ରହଣୀୟ । କଳିଙ୍ଗ, ଉତ୍କଳ ଓ କୌଶଳ ଏହି ତ୍ରିରାଜ୍ୟର ମିଶ୍ରଣ ପୂର୍ବରୁ ପଞ୍ଚଦେବତାଙ୍କ ପୂଜା ସର୍ବତ୍ର ଅନୁସୃତ ଥିଲା । ଖ୍ରୀ: ପୂ: ତୃତୀୟ ଶତାବ୍ଦୀରେ ସମ୍ରାଟ ଅଶୋକଙ୍କ ଆକ୍ରମଣ ଫଳରେ କଳିଙ୍ଗ ଜନଶୂନ୍ୟ ହୋଇପଡ଼ିଥିଲା । ଫଳରେ ଉପାସିତ ପଞ୍ଚଦେବତା

ଜଙ୍ଗଲବୃତ୍ତ ହୋଇ ଲୁକ୍କାୟିତ ହୋଇପଡ଼ିଥିଲେ । ସମୟାନୁକ୍ରମେ ଦେବୀଙ୍କ ଆବିର୍ଭାବ ଭୂମି, ପର୍ବତ ଉପତ୍ୟକା ତଥା ଅରଣ୍ୟ ମଧ୍ୟରୁ ହୋଇଥିବା ସମ୍ଭବ । ବର୍ତ୍ତମାନର ଶ୍ରୀ ସିଦ୍ଧ ଭୈରବୀ ପୀଠ, ସିମାଞ୍ଚଳର ନୃସିଂହନାଥ ମନ୍ଦିର, ମହେନ୍ଦ୍ରର ଗୋକର୍ଣ୍ଣେଶ୍ୱର, ପଞ୍ଚମାସ୍ଥ ଗଣେଶ ମନ୍ଦିର ଆଜି ଏପରି ଭାବେ ପ୍ରତିଷ୍ଠିତ ହୋଇଥିବା ଜଣାଯାଏ ।

ଐତିହାସିକ ଦୃଷ୍ଟି କୋଣରୁ ଦେଖିଲେ, ଏପରି ସୃଷ୍ଟି ହୋଇଥିବା ଭୈରବୀ ପୀଠରେ 'ମା ସିଦ୍ଧ ଭୈରବୀ'ଙ୍କ ଉତ୍ପତ୍ତି ସମ୍ପର୍କରେ ବିଭିନ୍ନ ପ୍ରକାର ଚମତ୍କାରପ୍ରଦ କିମ୍ବଦନ୍ତୀ ପ୍ରଚଳିତ ଅଛି । କିମ୍ବଦନ୍ତୀ ଅନୁଯାରେ ଦେବୀ ଭୂଗର୍ଭଜାତା । ଦିନେ ହରଡ଼ଙ୍ଗ ଗ୍ରାମବାସୀ ୬ ଗିନା ଗାଙ୍ଗୁଲି ରେଡ୍ଡି ନାମକ ଜଣେ କୃଷକ ଚାଷ କରୁଥିବା ଅବସ୍ଥାରେ ଶୁଷ୍କ ଭୂମି ମଧ୍ୟରୁ ପତିତ ଲଙ୍ଗଳ ମୂନ ରକ୍ତାକ୍ତ ହୋଇଥିବା ଦେଖି ଭୟଭୀତ ହୋଇ ଯାଇଥିଲା ଏବଂ ତତ୍‌କ୍ଷଣାତ୍ କୃଷିକାର୍ଯ୍ୟ ବନ୍ଦକରି ଘରକୁ ଫେରି ଯାଇଥିଲା । ସେଦିନ ରାତି ସେ ଏକ ଅଶରୀରୀ (ଶୂନ୍ୟ) ବାଣୀ ନିର୍ଦ୍ଦେଶରେ ଜାଣିବାକୁ ପାଇଥିଲା ଯେ, ସେହି ଚାଷ କ୍ଷେତ୍ରରେ ଦେବୀ ସିଦ୍ଧ ଭୈରବୀ ଅବସ୍ଥାନ କରନ୍ତି । ସେ ସେଠାରେ ଚିରଦିନ ପୂଜା ପାଇବା ପାଇଁ ଇଚ୍ଛା କରନ୍ତି ଏବଂ ତାଙ୍କ ମୂର୍ତ୍ତି ପୁନରୁଦ୍ଧାର କରିଯାଇ ସେଠାରେ ଦେବୀଙ୍କ ପାଇଁ ଏକ ମନ୍ଦିର ନିର୍ମାଣ କରିଯାଉ । ସେହି ରାତି ଗ୍ରାମର ଅନ୍ୟ କେତେକ ବିଶିଷ୍ଟ ବ୍ୟକ୍ତିମାନେ ମଧ୍ୟ ଅନୁରୂପ ସ୍ୱପ୍ନ ସନ୍ଦର୍ଶନ କରିଥିଲେ । ଏ ନିର୍ଦ୍ଦେଶନା ପାଇ ତାପରଦିନ କୃଷକ ତା' ପୂର୍ବ ଚାଷ କ୍ଷେତ୍ରକୁ ଗଲା । ମାଟି ଖୋଳି ଦେବୀଙ୍କୁ ଉଦ୍ଧାର କଲା । ଅତି ପ୍ରତ୍ୟୁଷରୁ ଗ୍ରାମବାସୀମାନେ ମଧ୍ୟ ରକ୍ତସ୍ରାବ ହେଉଥିବା ସ୍ଥାନର ସତ୍ୟତା ଉପଲବ୍ଧି ପାଇଁ ପରିଦର୍ଶନ କରି ଦେବୀ ସମ୍ଭୂତା ଏକ ପ୍ରସ୍ତର ମୂର୍ତ୍ତିର ବକ୍ଷ ନିଃସୃତ ରକ୍ତଧାର ଦେଖି ଭୟ ଓ ଭକ୍ତିରେ ନାମ ସଙ୍କୀର୍ତ୍ତନ କରି ପୂଜା କଲେ ଏବଂ ଦେବୀଙ୍କ ପୀଠ ମଧ୍ୟ ନିର୍ମାଣ କରିଦେଇଥିଲେ । ସମ୍ପ୍ରତି ଦେବୀଙ୍କ ବକ୍ଷସ୍ଥଳର ଡ଼ାହାଣ ପାଖରେ କର୍ଷିତ ଲଙ୍ଗଳ ମୂନରେ ଯେଉଁ କ୍ଷତ ଚିହ୍ନ ରହିଛି, ତାହା ଲଙ୍ଗଳ ମୁନାଘାତ ବୋଲି ଜନ-ସାଧାରଣଙ୍କର ବିଶ୍ୱାସ ଏବଂ ସେହି କ୍ଷେତ୍ରରୁ ସର୍ବଦା ଜଳ କ୍ଷରିତ ହେଉଥିବା ବର୍ତ୍ତମାନ ସୁଦ୍ଧା ଦେଖାଯାଉଛି ।

## ପୀଠର ସୂଚନା

ଗଞ୍ଜାମ ଜିଲ୍ଲାର ଶ୍ରେଷ୍ଠ ଗାଁଟିଏ ମନ୍ଦୀଡ । ସମଗ୍ର ଦକ୍ଷିଣ ଓଡ଼ିଶା ଏବଂ ଉପକୂଳବର୍ତ୍ତୀ ଆନ୍ଧ୍ର ଅଞ୍ଚଳରେ ଏ ଗାଁଟି ଶ୍ରୀ ସିଦ୍ଧ ଭୈରବୀ ପୀଠ ଲାଗି ଏକ ପ୍ରସିଦ୍ଧ ଦେବାୟତନ ଭାବେ ବେଶ ଜଣାଶୁଣା । ଗଞ୍ଜାମ ଜିଲ୍ଲାର ମୁଖ୍ୟ ସହର ବ୍ରହ୍ମପୁର ଠାରୁ ଦକ୍ଷିଣକୁ ଇଚ୍ଛାପୁର ଗଲାବେଳେ ଲମ୍ବି ଯାଇଥିବା ଜାତୀୟ ରାଜପଥର ୧୧ କି. ମି. ଗଲାପରେ ରାସ୍ତାକଡ଼କୁ ଲାଗି ଗୋଳନ୍ଥରା ଗାଁ ପଡ଼େ । ସେଠାରୁ ପୂର୍ବ ଦକ୍ଷିଣକୁ ଲମ୍ବିଥିବା ଏକ ସଙ୍କୀର୍ଣ୍ଣ ପିଚୁ ରାସ୍ତାରେ ପ୍ରାୟ ୪ କି. ମି. ଅତିକ୍ରମ କଲାପରେ ଶ୍ରୀ ସିଦ୍ଧ ଭୈରବୀ ପୀଠ ଅବସ୍ଥିତ । ଏହା ଏକ ପୁରାତନ ବାଣିଜ୍ୟ କେନ୍ଦ୍ର । ଏହି ସୁମନୋରମ ପୀଠ ସ୍ଥଳର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତୀବ ଆକର୍ଷଣୀୟ । ଏଠାର ଆଦ୍ୟ ଗୁରୁକୁଳ ବନ ଉଦ୍ୟାରଣ୍ୟର ଏକ ମନଲୋଭା ଦୃଶ୍ୟ ମାନବ ମନକୁ ସରସ କରାଏ । ଗାଁଟି ଅତି ଶ୍ରେଷ୍ଠ । ମାତ୍ର ୪୦୦ ଗୋଟି ପରିବାରର ସମଷ୍ଟି । ପୀଠର ପାଦଦେଶରେ ଯାନବାହାନରୁ ଅବତରଣ କଲେ କିଆ, କେତକୀ, ମଲ୍ଲୀ, ମାଳତୀ, ଚମ୍ପା ଆଦି ପୁଷ୍ପ ସୌରଭର ସୁଗନ୍ଧ ଧର୍ମ ପିପାସୁ ଭକ୍ତର ଘ୍ରାଣେନ୍ଦ୍ରିୟକୁ ଶିଥିଳ ସ୍ପର୍ଶ କରି ତନୁମନ ଉଲ୍ଲସିତ କରାଏ । ଅନତି ଦୂରରେ ଅବସ୍ଥିତ ବଟ, ଅଶ୍ୱତ୍ଥ, ନାରକେଳ ଶୀର୍ଷ ବୃକ୍ଷ ମାଳାର ଛାୟାରେ ଛାୟିତ ଶ୍ରୀ ସିଦ୍ଧ ଭୈରବୀ ପୀଠର ଦୃଷ୍ଟି ଗୋଚର ହୁଏ । ସନ୍ନିକଟ ମନ୍ଦୀଡ ଗାଁର ମଝିରେ ବୈଷ୍ଣବ ଧର୍ମ ବିଶ୍ୱାସର ରାଧାକାନ୍ତ, ବାଲାଜୀ, ଜଗନ୍ନାଥ ଓ ରଘୁନାଥଙ୍କର ୪ଟି ବିଶିଷ୍ଟ ବସ୍ତୁ ମନ୍ଦିର ଏବଂ ଶୈବ ମତବାଦର କାଶି ବିଶ୍ୱନାଥ, ଉତ୍ତରେଶ୍ୱର, ନୀଳକଣ୍ଠେଶ୍ୱରଙ୍କ ତିନୋଟି ଶିବ ମନ୍ଦିର ରହିଛି । ଗ୍ରାମର ପଶ୍ଚିମ ଦିଗରେ ଶ୍ରୀ ଶ୍ରୀ ଶ୍ରୀ ସିଦ୍ଧଭୈରବୀଙ୍କ ମନ୍ଦିର ଅବସ୍ଥିତ । ପୂର୍ବେ 'ହରଗୌରୀ' ଏ ଗାଁରେ ଗ୍ରାମ ଦେବତୀ ରୂପେ ପୂଜା ପାଉଥିଲେ । ସମ୍ପ୍ରତି ଶ୍ରୀ ଭୈରବୀଙ୍କ ସହିତ ହରଗୌରୀ ମଧ୍ୟ ଏ ପୀଠରେ ପୂଜା ପାଇ ଆସୁଛନ୍ତି ।

## ମନ୍ଦିରର ନିର୍ମାଣ ଓ ଦେବୀଙ୍କ ଆକୃତି

ଦେବୀଙ୍କ ମନ୍ଦିରର ଉତ୍ପତ୍ତି ବିଷୟରେ ମଧ୍ୟ ଅନେକ ଅନେକ ଲୋକକଥା ରହିଛି । ସେଥି ମଧ୍ୟରୁ ଅତ୍ୟନ୍ତ ବିଶ୍ୱାସଯୋଗ୍ୟ କେତେକ

ଏଠାରେ ପ୍ରତିଷ୍ଠା କରାଗଲା । ଅନେକ ଦିନଧରି ଦେବୀଙ୍କ ମନ୍ଦିର ନଥିଲା । କୌଣସି ଜଣେ ଭକ୍ତ ଏକ ଗମ୍ବୁଜାକୃତି ଶ୍ରେଷ୍ଠ ମନ୍ଦିର ତିଆରି କରିଥିଲେ । ତା'ର ଅନେକ ଦିନପରେ ଦିନେ ଦେବୀ ସ୍ୱୟଂ ହରଡଙ୍ଗ ଗ୍ରାମାଭିମୁଖୀ ହୋଇ ସେଠାରେ କେତେକ ବିଶିଷ୍ଟ ଲୋକଙ୍କୁ ସ୍ୱପ୍ନାଦେଶ ଦେଇ ନିଜର ଏକ ପୂର୍ଣ୍ଣାଙ୍ଗ ମନ୍ଦିର ସ୍ଥାପନ ପାଇଁ କହିଥିଲେ ସେହି ସମୟରେ ଦେବୀଙ୍କ ବାହାନ ଅଶ୍ୱର ଟାପୁ ଶବ୍ଦ ସହ ସୁବାସିତ ଗନ୍ଧରେ ଗ୍ରାମଟି ମହକି ଉଠିଥିଲା । ଏହି ସମୟରେ ଜଣେ ଭକ୍ତ ଘରୁ ବାହାରି ଆସି ଦେବୀଙ୍କର ଦର୍ଶନ ପାଇଥିବାର ବି ଲୋକକଥା ରହିଛି । ଏକ ସମୟରେ ୫ ଜଣ ସ୍ୱପ୍ନ ଦେଖି ଥିବାର କିମ୍ବଦନ୍ତୀ କହେ । ଗ୍ରାମବାସୀ ମନ୍ଦିର ନିର୍ମାଣ କରିବା ପାଇଁ ନିଷ୍ପତ୍ତି ନେଇଥିଲେ ହେଁ ତାହା ସମ୍ପୂର୍ଣ୍ଣ ହୋଇପାରି ନଥିଲା । ଫଳରେ ଦିନେ ପୁଣି ଦେବୀ ବସୁଆଳୀ ଗ୍ରାମର ଜନୈକ ବ୍ୟକ୍ତି ୭ ତାରୁ ନାୟକଙ୍କୁ ସ୍ୱପ୍ନାଦେଶ ଦେଲେ ଯେ, ତାଙ୍କ କୃପାରୁ ଧାନ ଅମାରରୁ ପ୍ରତ୍ୟେକ ଉଚ୍ଛୁଳି ପଡୁଥିବା ଧାନର ବିକ୍ରୟଲବ୍ଧ ଧନରେ ମନ୍ଦିର ନିର୍ମାଣ କରାଯାଉ । ଫଳରେ ହରଡଙ୍ଗ, ବସୁଆଳୀ ଓ ନିକଟସ୍ଥ ଅନେକ ଗ୍ରାମବାସୀଙ୍କ ଉଦ୍ୟମରେ ଦେବୀଙ୍କ ମନ୍ଦିରଟି ହିନ୍ଦୁ ଶାସ୍ତ୍ରୀୟ ପଦ୍ଧତି ଅନୁସାରେ ୧୯୦୭ ମସିହାରେ ନିର୍ମାଣ କରାଯାଇଥିଲା । ଏହା ନିର୍ମାଣ ହେବାର ବହୁଦିନ ପରେ ସେହି ଗ୍ରାମବାସୀଙ୍କ ସହାୟତାରେ ମନ୍ଦିରଟିକୁ ବୈଦିକ ରୀତିରେ ତା ୧୭-୩-୧୯୩୩ ମସିହାରେ ପ୍ରତିଷ୍ଠା କରାଯାଇଥିଲା ।

ଏହା ପୂର୍ବରୁ ମାଁ ଶ୍ରୀ ସିଦ୍ଧ ଭୈରବୀ ପାଖ୍ୟାର ପର୍ବତରେ ଅବସ୍ଥାପାନ କରୁଥିଲେ ବୋଲି କିମ୍ବଦନ୍ତୀ ଅଛି । ଦିନେ ଜଣେ ସାଧକ ଭକ୍ତ ଉକ୍ତ ପର୍ବତ ଦେଇଯିବା ସମୟରେ ସ୍ୱଚକ୍ଷୁରେ ଦେବୀଙ୍କର ପ୍ରଜ୍ୱଳିତ ଜୀବନ୍ତ ମୂର୍ତ୍ତି ଦେଖିବାକୁ ପାଇଥିଲେ । ଭୟଭୀତ ହୋଇଥିଲେ ସୁଦ୍ଧା ଉକ୍ତ ସାଧକ ଅନେକ ସାଧନା ଫଳରେ ଶ୍ୱେତଅଷ୍ଟଦଳ ପଦ୍ମ ଉପରେ ଦେବୀଙ୍କୁ ବିରାଜମାନ କରାଇ ନିଜର ମନବାଞ୍ଛା ପୂରଣ କରିଥିଲେ ଏବଂ ଶେଷରେ ସେ ଦେବୀଙ୍କୁ ପଥର ପାଲଟିଯିବା ପାଇଁ ଅନୁରୋଧ କରିଥିଲେ । ସେହି ଦିନଠାରୁ ଦେବୀ ପଥର ପାଲଟି ଯାଇଥିଲେ ଏବଂ କାଳକ୍ରମେ କିମ୍ବଦନ୍ତୀ, ଅନୁସାରେ ଦେବୀ ଏହି ପୀଠରେ ଅବସ୍ଥାନ କରି ମନ୍ଦିର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ସଙ୍ଗେ

ସଙ୍ଗେ ପୀଠର ଉତ୍ତରୋତ୍ତର ଉନ୍ନତି ପାଇଁ ତାଙ୍କର ଭକ୍ତମାନଙ୍କୁ ସ୍ୱପ୍ନାଦେଶ ଦେଇ ଆସୁଛନ୍ତି ।

ମନ୍ଦିରଟି ପ୍ରାୟ ୭୦ ଫୁଟ ଉଚ୍ଚ ବିଶିଷ୍ଟ । ପ୍ରାଚୀନ ଶୈଳୀରେ ନିର୍ମିତ । ଅନ୍ୟାନ୍ୟ ମନ୍ଦିର ଭଳି ଏଥିରେ ଏକମାତ୍ର ପଶ୍ଚିମାଭିମୁଖୀ ଦ୍ୱାର ରହିଛି ! ମନ୍ଦିର ଶୀର୍ଷରେ ପତାକା ବଳୟିତ ତ୍ରିଶୂଳ । ତିନୋଟି ପିଢ଼ । ପ୍ରଥମ ପିଢ଼ର ପାର୍ଶ୍ୱରେ ଆୟୁଧ ହସ୍ତେ ଦୁଇ ଦ୍ୱାରପାଳ, ଊର୍ଦ୍ଧ୍ୱରେ ନବଗ୍ରହ ଅବସ୍ଥିତ । ଭୂମି ପୃଷ୍ଠନଠାରୁ ପ୍ରାୟ ସାଢ଼େ ୪ଫୁଟ ତଳକୁ ଖୋଳି ବାହାରିଥିବା ଅଢ଼େଇଫୁଟ ଦୈର୍ଘ୍ୟ ଓ ଦେଢ଼ଫୁଟ ଚଉଡ଼ାର ନିମ୍ନଶୀର୍ଷ ସଙ୍କୀର୍ଣ୍ଣ ଆକାରର ଦେବୀଙ୍କ ଏକ ପ୍ରସ୍ତର ମୂର୍ତ୍ତି । ଦେବୀଙ୍କର ମୂର୍ତ୍ତି ଆକାର ଦୃଷ୍ଟିରୁ ବିଶେଷ ବୃହତ ନୁହେଁ । ଏହା ଏକ ତ୍ରିକୋଣାକାର ପଥରମୂର୍ତ୍ତି । ଗଠନ ଦୃଷ୍ଟିରୁ ମୂର୍ତ୍ତିର ବୈଶିଷ୍ଟ୍ୟ ମଧ୍ୟ ରହିଛି । ସେ ଚତୁର୍ଭୁଜା ଏବଂ ଏକପାଦ ବିଶିଷ୍ଟା ମୂର୍ତ୍ତିର ବାମପାର୍ଶ୍ୱ ସ୍କନ୍ଧ ନିକଟରେ ଏକ ଖାଲୁଆ ଅଂଶ (ଲଙ୍ଗଳର କ୍ଷତଚିହ୍ନ) ରହିଛି । ଏଠାରୁ ସୁବାସିତ ଗଙ୍ଗାଜଳ ଝର ନିର୍ଗତ ହୁଏ । ଚାରିଭୁଜରେ ପରଶୁ, ଆୟୁଧ, ପଦ୍ମ ଓ ଶୂଳ ବିରାଜିତ । ପାଦ ତଳରେ ପାତାଳବ୍ୟାପୀ ଏକ ବିବର ରହିଛି । ଏହା ସର୍ବଦା ଜଳପୂର୍ଣ୍ଣ ଥାଇ ବେଳେ ବେଳେ କେତେକ ଆଶ୍ଚର୍ଯ୍ୟାତ୍ମକ ଶବ୍ଦ ଏଥିରୁ ଅଦ୍ୟାବଧି କର୍ଣ୍ଣଗୋଚର ହୋଇଥାଏ । ଦେବୀ ମୂର୍ତ୍ତିର ପୃଷ୍ଠ ଦେଶରେ ଗଣେଶ ଶିବାଦିଙ୍କ ମୂର୍ତ୍ତି ରହିଥିବା କଥା ସାଧକମାନେ କହନ୍ତି । ମୂର୍ତ୍ତି ଐଶାନ୍ୟମୁଖୀ ହୋଇ ଅଧିଷ୍ଠିତା ।

ତାଙ୍କର ଦୃଷ୍ଟି ମନ୍ଦିରର ବେଢ଼ା ସଂଲଗ୍ନ ହୋଇଥିବା ବ୍ରାହ୍ମଣମାନଙ୍କ ଶ୍ମଶାନ ମଧ୍ୟ ଦେଇ ପ୍ରାୟ ଏକ ମାଇଲ ଦୂରସ୍ଥ ପାଣ୍ଡୁର ପାହାଡ଼ ଯାଏ ଲମ୍ବିଛି । ଲୋକଙ୍କର ବିଶ୍ୱାସ ଏହି ପାହାଡଟି ଦେବୀଙ୍କର ଲୀଳାପୀଠ । ଦେବୀ ( ନିଶାର୍ଦ୍ଧ କାଳରେ ) ମଧ୍ୟରାତ୍ରରେ ସିଂହାରୂଢ଼ା ହୋଇ ଚଣ୍ଡୀ ଚାମୁଣ୍ଡାଦିଙ୍କ ମେଳରେ ଅଦ୍ଭୁତ ଜାଳ ଅତି ଉଲ୍ଲାସ ଚିତ୍ତରେ ଏଠାରେ ବିହରଣ କରନ୍ତି ଏବଂ ନିକଟବର୍ତ୍ତୀ ଗ୍ରାମ ଗୁଡିକୁ ଗମନ କରି ନଗର ପରିକ୍ରମା କରୁଥିବା ଚକ୍ଷୁଦର୍ଶିତ ବିବରଣୀରୁ ପ୍ରକାଶ । ବର୍ଣ୍ଣିତ ପାଣ୍ଡୁର

ପର୍ବତର ଉପର ଭାଗରେ ଦେବୀଙ୍କ ପାଦଚିହ୍ନ, ଜଳପୂର୍ଣ୍ଣ ଏକ କୁଣ୍ଡ ଅଛି । ଜଳ କୁଣ୍ଡଟି ଦେବୀଙ୍କର ବିଳାସ ତଡ଼ାଗ ବୋଲି ଏଠିକାର ଲୋକଙ୍କର ଧାରଣା ଏ କୁଣ୍ଡରେ ପାଣି ଋତୁ ଭେଦରେ ପ୍ରାୟ ସମପରିମାଣରେ ରହେ । ପ୍ରବାଦଟିଏ ପ୍ରଚଳିତ ଅଛି—ପାଣି କୁଣ୍ଡରେ ପଦ୍ମ ଫୁଲଟିଏ ସର୍ବଦା ଫୁଟନ୍ତା ଅବସ୍ଥାରେ ରହୁଥିଲା । ଜଣେ ଋଜୋବତୀ ନାରୀ ଫୁଲଟିକୁ ତୋଳି ଆଣିବା ପରଠାରୁ ସେଠାରେ ଆଉ ଫୁଲଟି ଦେଖା ଯାଉନାହିଁ । ଏହି ପର୍ବତଟି ମାଁ ସିଦ୍ଧ ଭୈରବୀଙ୍କ ବିହାର ସ୍ଥଳୀ ହୋଇଥିବା ଦୃଷ୍ଟିରୁ ଚୈତ୍ର ମାସର କୌଣସି ଏକ ଶୁଭ ଦିବସରେ ସନ୍ନିକଟ ପାଲ୍ଲୁର ଗ୍ରାମବାସୀମାନେ ଏହି ପ୍ରାନ୍ତର ପାହାଡ଼ରେ ଦେବୀଙ୍କ ଲାଗି ଏକ ଭୋଜି ଆୟୋଜନ କରନ୍ତି ଏବଂ ଶ୍ରୀ ଶ୍ରୀ ଭୈରବୀଙ୍କ ପୂଜା କରି ଭୋଜି ସାମଗ୍ରୀ ଦେବୀଙ୍କୁ ଅର୍ପଣ କରିବାପରେ ଗ୍ରାମବାସୀମାନେ ଅତି ଉଲ୍ଲାସରେ ପ୍ରସାଦ ସେବନ କରନ୍ତି । ଏହି ଭୋଜି "ଜନ୍ତାଳ" ଭୋଜି ନାମରେ ପରିଚିତ ଏବଂ ଚିରାଚରିତ ପ୍ରଥାରେ ଅନୁସୃତ ।

ଦେବୀଙ୍କ ପୀଠଶାଳାକୁ ବାଦଦେଲେ ମନ୍ଦିରର ପରିସର ମଧ୍ୟରେ ନାମଯଜ୍ଞ ମନ୍ଦିର, ଆନନ୍ଦ ମଣ୍ଡପ, ପ୍ରସାଦ ସେବନ ମଣ୍ଡପ, ଲକ୍ଷ୍ମୀ ଭଣ୍ଡାର, ଗନ୍ତାଘର, ରୋଷେଇ ଶାଳା, ଭକ୍ତ ମାନଙ୍କ ପାଇଁ ବିଶ୍ରାମ ଘର ଏବଂ ସମ୍ମୁଖ ଭାଗରେ ସିଂହଦ୍ୱାର ଇତ୍ୟାଦି ଦେଖିବାକୁ ମିଳେ । ଏତଦ୍ ବ୍ୟତୀତ ମୁଖ୍ୟ ମନ୍ଦିରକୁ ପ୍ରବେଶ କଲାବେଳେ ତିନୋଟି ଘେର (ସିଂହଦ୍ୱାର) ଅତିକ୍ରମ କରିବାକୁ ହୁଏ । ପ୍ରଥମ ଘେରରେ ବୃକ୍ଷ ଗୁଳ୍ମାଚ୍ଛାଦିତ ଏକ ମୁକ୍ତ ମଣ୍ଡପ ମେଳଣ ପଡ଼ିଆ । ଏଠାରେ ବିଭିନ୍ନ ଜାତି ତଥା ସମ୍ପ୍ରଦାୟର କୌଳିକ ସଭା ସମିତିମାନ କରାଯାଇଥାଏ । ଦେବୀଙ୍କ ମହିମା ବଳରେ ସଭା ସମିତିମାନ ଗଣ୍ଡଗୋଳ ଶୂନ୍ୟରେ ସମାପନ ହୋଇଥାଏ । ଅନ୍ୟ ଏକ ପାର୍ଶ୍ୱରେ ଉଦ୍ୟାନ, ରନ୍ଧନ ଓ ଭୋଜନଶାଳା ଅବସ୍ଥିତ । ଯେହେତୁ ଦେବୀଙ୍କ ନିର୍ଦ୍ଦେଶ କ୍ରମେ ସେ ବୈଷ୍ଣବୀ ରୂପେ ବିରାଜିତା, ଆମିଷ ଭୋଗ ଲାଗେ ନାହିଁ । ବଣ ଭୋଜି ଆଦିରେ ଆସୁଥିବା ବ୍ୟକ୍ତିଙ୍କ ପାଇଁ ସମସ୍ତ ପ୍ରକାର ଆମିଷ ସାମଗ୍ରୀ ରନ୍ଧନ ଓ ଉପଭୋଗ ପାଇଁ ଏହି ବାହ୍ୟ ଘେର ସ୍ଥିତ ଉଦ୍ୟାନଟି ବ୍ୟବହାର କରାଯାଏ, ଦ୍ୱିତୀୟ ଦ୍ୱାରର ପ୍ରାରମ୍ଭରେ ନଅଟି ମନ୍ଦିରରେ ଦେବୀଙ୍କ ସୃଷ୍ଟି ମାହାତ୍ମ୍ୟ ପ୍ରତିମା ଆକାରରେ ପୂଜିତ ଓ ବର୍ଣ୍ଣିତ ଏହି ପ୍ରବେଶ ପଥର ଦୁଇପାର୍ଶ୍ୱରେ ଦୁଇଟି ସିଂହ ମଧ୍ୟ ଏକ ଅଶ୍ୱ ( ଗୋଟିଏ

ପଥରରେ ତିଆରି) ଅବସ୍ଥିତ । ଦ୍ୱିତୀୟ ଘେର ମଧ୍ୟରେ ଦେବୀଙ୍କ ଗୋଷେଇ-ଶାଳା, ଛତ୍ରଗୃହ ପାନ୍ଥଶାଳା ଓ ଶ୍ରୀ ରାଧାକୃଷ୍ଣ ମହାନାମ ସଙ୍କୀର୍ତ୍ତନ ଅଷ୍ଟ-ପ୍ରହରର ଯଜ୍ଞ ମନ୍ଦିର ଅବସ୍ଥିତ । ବର୍ତ୍ତମାନ ଏଠାରେ ଅହରହ ମହାନାମ ସଙ୍କୀର୍ତ୍ତନ ଅହରହ ଚାଲିଛି । ତତ୍‌ପରେ ମନ୍ଦିରର ତୃତୀୟ ସିଂହ ଦରଜା ପିତଳ ଧାତୁ ନିର୍ମିତ । ଦ୍ୱାର ଉପରେ ଈଶ୍ୱର ପାର୍ବତୀଙ୍କ ଏକ ସୁରମ୍ୟ ପ୍ରତିମୂର୍ତ୍ତି । ଶିରୋପରେ ଏକ କଂସା ଘଣ୍ଟି ଯାହାର ଧ୍ୱନୀ ୮ରୁ ୧୦ କି: ମି: ପର୍ଯ୍ୟନ୍ତ ଶୁଣାଯାଉଥାଏ । ତୃତୀୟ ଘରରେ ଆନନ୍ଦ ମଣ୍ଡପ, ଭୋଗ ମଣ୍ଡପ, କଲ୍ୟାଣ ମଣ୍ଡପ (ମାର୍ବଲ ତିଆରି), ହୋମ ଓ ପଞ୍ଚ ଦେବତାଙ୍କ ମଣ୍ଡପ, ପୂଜା ଉପକରଣର ସୁରକ୍ଷା ପାଇଁ ଏକ କଠୋରୀ, ଓ ପାନ୍ଥଶାଳା ମନ୍ଦିରକୁ ବେଷ୍ଟିତ କରି ରହିଅଛି । ମନ୍ଦିର ସମ୍ମୁଖରେ ଥିବା ଆନନ୍ଦ ମଣ୍ଡପର ଉପର ଭାଗ ଗର୍ଭ ଦେଶରେ ଚଣ୍ଡୀ ପୁରାଣ ବର୍ଣ୍ଣିତ ଦେବୀଙ୍କର ଅସୁର ଦଳନ ଚରିତ ଚିତ୍ରିତ ଓ କାଚଫଳକରେ ସୁରକ୍ଷିତ । ଦର୍ଶନ ଉଦ୍ଦେଶ୍ୟ ଆସୁଥିବା ବ୍ୟକ୍ତି-ମାନଙ୍କ ସୁରକ୍ଷା ଓ ସୁଦର୍ଶନ ନିମିତ୍ତ ଲୌହଧାର ବନ୍ଧା ଧାଡି ନିୟମରେ ମନ୍ଦିର ପରିକ୍ରମାପୂର୍ବକ ଦେବୀଙ୍କ ଦର୍ଶନ ବ୍ୟବସ୍ଥା କରାଯାଇଥାଏ ।

## ପୂଜା ପଦ୍ଧତି

ମାତୃ ପୂଜାର ପରମ୍ପରା ଅନୁସାରେ ସାତ୍ତ୍ୱିକ, ରାଜସିକ, ତାମସିକ ଗୁଣ ଭେଦକୁ ନେଇ ଭିନ୍ନ ଭିନ୍ନ ରୂପରେ ଦେବୀ ପୂଜା କରାଯାଇଥାଏ । ଶ୍ରୀ ସିଦ୍ଧ ଭୈରବୀଙ୍କର ଆରାଧନା ପରମ୍ପରାରେ କେତେକ ଲକ୍ଷଣିକ ବୈଶିଷ୍ଟ୍ୟ ଦେଖିବାକୁ ମିଳେ । ସେ ଏଠାରେ ସାତ୍ତ୍ୱିକ ପୂଜା ପଦ୍ଧତିରେ ପୂଜା ପାଆନ୍ତି । କାରଣ ଏ ସମ୍ପର୍କରେ ଏକ କିମ୍ବଦନ୍ତୀ ଏଠାରେ ବହୁ କାଳରୁ ପ୍ରଚଳିତ ।

ଲୋକଙ୍କର ବିଶ୍ୱାସ ଯେ, ସମ୍ପ୍ରତି ଜରଡ଼ା ସୁବର୍ଣ୍ଣପୁର ମଠମହନ୍ତଙ୍କ ପୂର୍ବ ପୁରୁଷର ଜଣେ ଆଚାର୍ଯ୍ୟ ଏହି ମନ୍ତ୍ରୀଡ଼ ଗ୍ରାମସ୍ଥ ଶ୍ରୀ ରଘୁନାଥ ପୀଠରେ ପଞ୍ଚମୁଖୀ ହନୁମାନ ମନ୍ତ୍ର ସାଧନ କରୁଥିଲେ । ଦିନେ ମଧ୍ୟ ରାତ୍ରୀରେ ସେ ସାଧନା ରତ ଥିବା ଅବସରରେ, ଏକ ଅପରୂପା ଦିବ୍ୟ ନାରୀମୂର୍ତ୍ତି ଦେଖିବାକୁ ପାଇଥିଲେ । ସେ ନାରୀ ମୂର୍ତ୍ତିଟି ବିବିଧ ରତ୍ନ ଅଳଙ୍କାର ଏବଂ ପାଟ ବସ୍ତ୍ର

ଦ୍ୟୁତିରେ ଅତି ଉଜ୍ଜ୍ୱଳିତ ହୁଏ ବିକିରଣ ହେଉଥିଲା । ସେ ମୁହୂର୍ତ୍ତରେ ସମ୍ଭବତଃ ଆଚାର୍ଯ୍ୟ ସାଧକ ଏ ନାରୀ ମୂର୍ତ୍ତିଙ୍କଠାରେ କିଛି ଐଶୀ ଶକ୍ତିର ସନ୍ଧାନ ପାଇ ତାଙ୍କ ପଛେ ପଛେ ଅନୁଧାବନ କଲେ । ନାରୀମୂର୍ତ୍ତିଟି ଆଜିର ମାଁ' ଶ୍ରୀ ସିଦ୍ଧ ଭୈରବୀ ମନ୍ଦିର ପର୍ଯ୍ୟନ୍ତ ଚାଲି ଆସିବା ପରେ ତାହାଙ୍କୁ ଅନୁସରଣ କରି ଆସୁଥିବା ଆଚାର୍ଯ୍ୟଙ୍କୁ କହିଲେ ଯେ, ସେ ହେଉଛନ୍ତି ଏହି ପୀଠର ଶ୍ରୀ ସିଦ୍ଧ ଭୈରବୀ । ଲୋକେ ତାଙ୍କୁ କେବଳ ଶାକ୍ତ ଭାବରେ ଗ୍ରହଣ କରୁଥିବା ଯୋଗୁଁ ରାମାନୁଜ ପନ୍ଥୀ ବା ବୈଷ୍ଣବ ସମ୍ପ୍ରଦାୟର ବ୍ୟକ୍ତି ତଥା ଭକ୍ତ ବିଶେଷମାନେ ତାଙ୍କର ପୂଜା ଆରାଧନାରେ ଯୋଗ ଦେଉନ୍ତି ନାହିଁ । ତେବେ ସେ କେବଳ "ଶାକ୍ତ" ନୁହଁନ୍ତି । "ବୈଷ୍ଣବ" ମଧ୍ୟ, ଏ ହେତୁ ତାଙ୍କ ମନ୍ଦିର ଓ ପୂଜାର୍ଚ୍ଚନା ସବୁ ସମ୍ପ୍ରଦାୟଙ୍କ ପାଇଁ ଉନ୍ମୁକ୍ତ । ଏ ବାଣୀ ଲୋକଙ୍କ ଗହଣରେ ପ୍ରଚାର କରିବା ପାଇଁ ଦେବୀ ତାଙ୍କୁ ନିର୍ଦ୍ଦେଶ ଦେଇ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ । ସେହି ଦିନଠାରୁ ଦେବୀ ପରମ ବୈଷ୍ଣବୀ ଭାବରେ ପୁଣି ଶାକ୍ତ ପରମ୍ପରାରେ ସବୁ ସମ୍ପ୍ରଦାୟଙ୍କ ଦ୍ୱାରା ପୂଜିତା ହୋଇ ଆସୁଛନ୍ତି ।

ଆଦିଭୂତା ଦେବୀ ଶ୍ରୀ ସିଦ୍ଧଭୈରବୀ ଏକ ପ୍ରକାର ପୂଜକ ଜାତି ମାଳୀ ଓ ବ୍ରାହ୍ମଣମାନଙ୍କ ଦ୍ୱାରା ବଂଶାନୁକ୍ରମେ ପୂଜିତା । ଅନ୍ୟୁନ ପଞ୍ଚ-ତିରିଶଟି ପରିବାର ଦେବୀଙ୍କର ସେବାୟତ ଭାବରେ ରହିଛନ୍ତି । ଏମାନେ ହିଁ ମନ୍ଦିରର ପୂଜାବିଧି କାର୍ଯ୍ୟର ତତ୍ତ୍ୱାବଧାରକ ଦେବୀଙ୍କର ଭୂସମ୍ପତ୍ତି ସ୍ୱରୂପ କେବଳ ପାଞ୍ଚ ଏକର ଜମି ଅଛି । ଭୂସମ୍ପତ୍ତିର ଆୟକୁ ବାଦଦେଲେ ସେବାୟତମାନେ ଆଖ ପାଖ ଗାଁରୁ ପ୍ରତିଦିନ ଭୋଗ ସାମଗ୍ରୀ ସଂଗ୍ରହ କରି ଦେବୀଙ୍କ ପୂଜା କରନ୍ତି । ଦେବୀଙ୍କର ପୂଜାର୍ଚ୍ଚନା ବର୍ଷସାରା ଯଥାବିଧି ପାଳିତ ହୁଏ । ମୁଖ୍ୟତଃ ଗାୟତ୍ରୀ ମନ୍ତ୍ରରେ ଦେବୀଙ୍କୁ ପୂଜା କରାଯାଏ । ତା ସହିତ ଦେବୀଙ୍କର ଅତି ପ୍ରିୟ ପୂଜା ମନ୍ତ୍ର "ଓଁ ଅମ୍ବେ ଅମ୍ବିକେ ଅମ୍ବାଳିକେ × × × ଭଜଂ ଭୈରବୈଚ—ଦୁର୍ଗାୟୈ" ପାଠ କରାଯାଇ ଦୈନିକ ଦେବୀଙ୍କ ପୂଜା କରନ୍ତି ।

ପ୍ରତ୍ୟହ ପୂଜା ସମୟରେ ଦେବୀଙ୍କ ପାଖରେ ଶଙ୍ଖ, ମହୁରୀ, ଘୁମୁରା, ଡ଼ମ୍ଫ, ଖାରକାହାଳୀ, ଆଦି ସ୍ୱତନ୍ତ୍ର ବାଜା ଆଦି ବଜା ଯାଇଥାଏ । ଏହି

ପୂଜକ ମାନଙ୍କ ଅଭ୍ୟସ୍ତ ଅଖଣ୍ଡ ଶଙ୍ଖ ଶବ୍ଦର ସ୍ୱର ଓଡ଼ିଶା ତଥା ଭାରତ-ବିଖ୍ୟାତ । ଚୂଆ, ଚନ୍ଦନ, କର୍ପୂର, ସିନ୍ଦୂର, ହଳଦୀ ଆଦି ସହ ଦେବୀଙ୍କ ମାର୍ଜନା, ସ୍ନାନ କରାଯାଇ କୃଷ୍ଣମାଳ ପଟ୍ଟବସ୍ତ୍ର ଆଚ୍ଛାଦନରେ ସ୍ୱର୍ଣ୍ଣ ମସ୍ତକ, କିରୀଟ ଅଳଙ୍କାରରେ ଭୂଷିତ କରାଇ ପାରିଜାତ ଅପରାଜିତା, କନିଅର ଇତ୍ୟାଦି ବିଭିନ୍ନ ପ୍ରକାର ପୁଷ୍ପ ସହ ଧୂପ ଦୀପ, ନୈବେଦ୍ୟ ଅର୍ପଣ କରାଯାଇ ପ୍ରଗାଢ଼ ବିଶ୍ୱାସ ସହ ପୂଜା, ଉପାସନା ଓ ଆରାଧନା ଦେବୀଙ୍କୁ ବୈଷ୍ଣବୀ ରୂପେ ତୁଳସୀ ଦଳେ ଏବଂ ଶିବା ରୂପରେ ବେଲପତ୍ରରେ ପୂଜା କରାଯାଏ । ଏଣୁ ଏଥିରୁ ଜଣାଯାଏ ଦେବୀ ଶ୍ରୀ ଶ୍ରୀ ସିଦ୍ଧ ଭୈରବୀ ବୈଷ୍ଣବ, ଶାକ୍ତ ଓ ଶୈବ ଧର୍ମର ଏକ ସମନ୍ୱୟ । ଏଠାରେ ଶାକ୍ତମାନଙ୍କ ଦ୍ୱାରା ତନ୍ତ୍ରୋକ୍ତ ପ୍ରକାରେ ଦଶଗୋଟି ବିଶିଷ୍ଟ ରାତ୍ର ମାନଙ୍କରେ ଦେବୀଙ୍କର ନିଶି ପୂଜା କରାଯାଏ । ଦାରୁଣ, ଦିବ୍ୟ, ମୋହ, ମହା, କାଳ, ଘୋର ଓ ସିଦ୍ଧି ରାତ୍ରିର ପୂଜା ଦର୍ଶନୀୟ । ବିଶେଷ କରି ପ୍ରତି ସଙ୍କ୍ରାନ୍ତି ଦିନ ନିଶାର୍ଦ୍ଧରେ ଅନୁଷ୍ଠିତ ହେଉଥିବା ଷୋଡ଼ଶ ଉପଚାର ପୂଜା ସମୂହ ଶାସ୍ତ୍ରଜ୍ଞ ସିଦ୍ଧ ପଣ୍ଡିତମାନଙ୍କ ଦ୍ୱାରା ଅତି ନିଷ୍ଠାର ସହ କରାଯାଇଥାଏ । ଏହି ଦୃଶ୍ୟ ପ୍ରକୃତରେ ଲୋଭନୀୟ ଓ ଗାଢ଼ ଆଧ୍ୟାତ୍ମିକ ଭାବଧାରା ମନରେ ଜନ୍ମିଥାଏ ।

ପ୍ରତ୍ୟହ ୨୦୦ ଭକ୍ତ ଏହି ପୀଠରେ ସମବେତ ହୋଇ ଦେବୀଙ୍କ ପୂଜା ଆରାଧନାରେ ଭାଗ ନିଅନ୍ତି । ପ୍ରାତଃ ବ୍ରାହ୍ମ ମୂହୂର୍ତ୍ତଠାରୁ ରାତ୍ର ୧୦ଘଣ୍ଟା ଯାଏ ପାରମ୍ପରିକ ରୀତିରେ ଅତି ନିଷ୍ଠାର ସହ ଦେବୀଙ୍କ ପୂଜା ବିଧି ଚାଲେ । ଭକ୍ତମାନଙ୍କ ଆକୁଳ ନିବେଦନ ପୂଜା ବିଧାନ ଇତ୍ୟାଦି ସର୍ବଦା ମନ୍ଦିର ପରିବେଶକୁ ସାତ୍ତ୍ୱିକ ଭାବନା ମୁଖର କରି ରଖିଥାଏ । ବିଶେଷତଃ ସପ୍ତାହର ପ୍ରତି ଶନିବାର, ରବିବାର ଓ ମଙ୍ଗଳବାର" ଦେବୀଙ୍କର ସ୍ୱତନ୍ତ୍ର ପୂଜା ପାଇଁ ଉତ୍କୃଷ୍ଟ ଦିନ, ଏଣୁ ଏହି ଦିନ ମାନଙ୍କରେ ବାହାରୁ ବହୁତ ଭକ୍ତ ଆସିଥାନ୍ତି ଏବଂ ଭିଡ଼ ଜମେ ।

## ବିଭିନ୍ନ ପର୍ବ

ଏହା ବ୍ୟତୀତ ପ୍ରତି ମାସର ସଙ୍କ୍ରାନ୍ତି ଦିନ ଦେବୀଙ୍କର ମାସିକ ପର୍ବ ଉତ୍ସବ ପାଳିତ ହୁଏ । ସେଦିନ ଅନ୍ୟୁନ ୧୦ ହଜାର ଭକ୍ତ ରୁଣ୍ଡ ହୁଅନ୍ତି । ଅନେକ ସଙ୍କ୍ରାନ୍ତି ପୂଜାକୁ ବ୍ରତ ଭାବେ ଗ୍ରହଣ କରି ଦେବୀଙ୍କୁ ପୂଜା ଆରାଧନା

କରିଥାନ୍ତି ଏବଂ ସେମାନଙ୍କର ଅଭିଷ୍ଟ (ମନସ୍କାମନା) ସିଦ୍ଧ ହୋଇଥାଏ । କେବଳ ଏହି ସଂକ୍ରାନ୍ତି ଦିନମାନଙ୍କରେ ଦେବୀଙ୍କର ପୂଜାପ୍ରାପ୍ତ ରାତ୍ର ଦୁଇଘଣ୍ଟା ପର୍ଯ୍ୟନ୍ତ ଧମପୂ୍ର ସମପ୍ରେ ଚୃଲେ । ଅତୀତରେ ଏହି ସଂକ୍ରାନ୍ତି ପର୍ବର ସଂଗୃହୀତ ପୂଜା ସାମଗ୍ରୀକୁ ଭକ୍ତ ମାନଙ୍କ ଗହଣରେ ବିନା ମୂଲ୍ୟରେ ବିତରଣ କରାଯାଉଥିଲା । କିନ୍ତୁ ବର୍ତ୍ତମାନ ମନ୍ଦିରର ଉନ୍ନତି କଲ୍ପେ ଏ ପ୍ରସାଦକୁ ଖୁବ୍ କମ୍ ମୂଲ୍ୟରେ ବିକି କରାଯାଉଛି ।

ଦେବୀଙ୍କର ଆଉ ଏକ ଉଲ୍ଲେଖଯୋଗ୍ୟ ପର୍ବ ହେଉଛି, ନବରାତ୍ର ପୂଜା । ଭାରତର ସବୁ ଦେବୀଙ୍କ ପୂଜା ବିଧାନ ଭଳି ଏଠି ମଧ୍ୟ ଆଶ୍ୱିନ ଅମାବାସ୍ୟା-ଠାରୁ ଅଷ୍ଟମୀ ଯାଏ (ମହାଷ୍ଟମୀ ଏବଂ ନବରାତ୍ର ପୂଜା) ଉତ୍ସବ ବିଧି ବିଧାନ ସମ୍ମତ ଭାବରେ ଚୃଲେ । ଏହି ଦିନ ମାନଙ୍କରେ ଦେବୀ ପ୍ରସନ୍ନ ପୂର୍ବକ ନବରାତ୍ର ପୂଜା ଉଦ୍ଦେଶ୍ୟ (ଠାକୁରାଣୀ ଯାତ୍ରା) ମନ୍ତ୍ରୀଡ଼ି ଆଦି ଗ୍ରାମରେ ଥିବା (କୋଠି) ଘରମାନଙ୍କୁ ଯାତ୍ରା କରିଥାନ୍ତି । ଏହି ସମୟରେ ମନ୍ତ୍ରୀଡର ଠାକୁରାଣୀ ଯାତ୍ରା ସମ୍ପର୍କୀୟ ସ୍ୱତନ୍ତ୍ର ପୂଜା, ବସ୍ତୁାଳୀର ଅଗ୍ନି ପରୀକ୍ଷା ଓ ହରଡଙ୍ଗର ଠାକୁରାଣୀ ଯାତ୍ରା ଉତ୍ସବ ଗୁଡିକ ଲକ୍ଷଣୀୟ ଓ ପ୍ରସିଦ୍ଧ ଲାଭ କରିଛି । ଏହି ପୂଜାର ଶେଷ ରାତ୍ରରେ ଦେବୀଙ୍କୁ ପୁଡ଼ା ପିଠା ଭୋଗ ଲାଗିବା ପରମ୍ପରା ଚଳି ଆସିଛି । କଥିତ ଅଛି ଯେ, ଏହି ଭୋଗ ସମୟରେ ଦେବୀ 'ନୋଥ' ଆଉ 'ଗୁଣା' ନାସାରେ ଅଳଙ୍କାର ଭୂଷିତା ହୋଇଥାନ୍ତି । ତାପରେ ମହାଷ୍ଟମୀ ରାତ୍ର ଦେବୀ ମନ୍ତ୍ରୀଡ ନଗର ପରିକ୍ରମା କରି ସ୍ୱମନ୍ଦିରକୁ ଆସନ୍ତି ଏବଂ ଦେବୀଙ୍କ ପୂଜା ଆରାଧନା ମହାସମାରୋହରେ ସମାପନ ହୋଇଥାଏ । ତାପର (ନବମୀ) ଦିନ ଆଉ ଦେବୀଙ୍କ ପୂଜା ଆରାଧନା କରାଯାଏ ନାହିଁ । ସେହି ଦିନକୁ ମେରୁଶୂନ୍ୟ ବା ଦେବୀଙ୍କର ରକ୍ତ ମୁଖ ବୋଲି ଲୋକେ କହିଥାନ୍ତି । ପୁଣି ଦଶହରାଠାରୁ ନିତ୍ୟ ନିୟମିତ ପୂଜା ଆରାଧନା ପୂଜା କରାଯାଇଥାଏ ।

ଏଠାରେ ବି ଅନ୍ୟାନ୍ୟ ଦେବୀ ପୀଠମାନଙ୍କ ପରି ଦେବୀଙ୍କର ଆଉ ଏକ ମନୋରମ ପର୍ବ ଚୈତ୍ର ମାସ ଶେଷ ମଙ୍ଗଳବାର ଦିନ ମହା-ସମାରୋହରେ ଅନୁଷ୍ଠିତ ହୁଏ । ଏହି ଯାତ୍ରାକୁ 'ଝାମୁଯାତ୍ରା' ଏବଂ ସେଦିନର ପୂଜାକୁ 'ବାସନ୍ତୀ ପୂଜା' ବୋଲି କୁହାଯାଇଥାଏ । ମହାବିଷୁବ ସଂକ୍ରାନ୍ତି ଦିନ

ଓଡ଼ିଆମାନଙ୍କର ନୂତନ ବର୍ଷର ପ୍ରାରମ୍ଭ ହେତୁ ଏବଂ ସେହିଦିନ ଦେବୀଙ୍କର ଭୈରବୀ-ବ୍ରତାଦିର ଆରମ୍ଭ ଯୋଗୁଁ ଲକ୍ଷ ଲକ୍ଷ ଜନ ସମାଗମ ହୁଅନ୍ତି । ଏହା ବ୍ୟତୀତ, ବିଶେଷତଃ ଦୀପାବଳୀ, ଅକ୍ଷୟ ତୃତୀୟା, ଅଶୋକାଷ୍ଟମୀ ଓ ବିଭିନ୍ନ ପର୍ବ ପର୍ବାଣୀ ମାନଙ୍କରେ ସ୍ୱତନ୍ତ୍ର ପୂଜାମାନ ଅନୁଷ୍ଠିତ ହେଉଥିବା ଦୃଷ୍ଟିରୁ ବହୁଧର୍ମ ପ୍ରାଣ ବ୍ୟକ୍ତିମାନେ ବିଭିନ୍ନ ଅଞ୍ଚଳରୁ (ଦକ୍ଷିଣରେ ବିଶାଳ ଆନ୍ଧ୍ର ପ୍ରଦେଶଠାରୁ ଆରମ୍ଭ କରି ଉତ୍ତରରେ ପଶ୍ଚିମ-ବଙ୍ଗ, ଓଡ଼ିଶା ସମେତ ଆସି ) ଏଠାରେ ଲକ୍ଷାଧିକ ଭାବେ ରୁଣ୍ଡ ହୁଅନ୍ତି । ଏହି ପୀଠ ସ୍ଥଳୀକୁ ପ୍ରାୟ ସମସ୍ତ ତନ୍ତ୍ର ସାଧକମାନେ (ବ୍ରାହ୍ମଣ ପୁରୋହିତ, ସାଧୁ-ସନ୍ନ୍ୟାସୀ ଜ୍ୟୋତିଷମାନେ) ଶାସ୍ତ୍ରୋକ୍ତମତେ କର୍ମସାଧନ ପାଇଁ ଏଠାକୁ ଆସି ପୂଜା ଆରାଧନା କରୁଥିବା ଦେଖାଯାଏ ।

## ସାମାଜିକ ଓ ଅର୍ଥନୈତିକ ପୃଷ୍ଠଭୂମି

ଦେବୀ ଶ୍ରୀ ସିଦ୍ଧ ଭୈରବୀଙ୍କ ପୂଜା ପରମ୍ପରା ଏଠାକାର ଅଧିବାସୀ ମାନଙ୍କ ତଥା ଅର୍ଥନୈତିକ ଜୀବନ ସହ ସମ୍ପୂର୍ଣ୍ଣ ସଂଶ୍ଲିଷ୍ଟ । ସେ ଏହି ଅଞ୍ଚଳର ସାହୁ ସଙ୍ଖାଧାରୀ ବ୍ରାହ୍ମଣମାନଙ୍କ ଇଷ୍ଟଦେବୀ ରୂପେ ପୂଜିତା । ଦେବୀଙ୍କୁ କୃଷି କ୍ଷେତ୍ରରୁ ଉଦ୍ଧାର କରାଯିବା ପରେ ଏଠାକାର ସାଧବ (ବର୍ତ୍ତମାନର ସାହୁ ସଙ୍ଖାଧାରୀ ବ୍ରାହ୍ମଣମାନେ ତାଙ୍କ ପ୍ରତିଷ୍ଠା, ପୂଜା ପରମ୍ପରା ସମସ୍ତ ଦାୟିତ୍ୱ ବହନ କରିଥିଲେ । ଆଶ୍ୱିନ ଶୁକ୍ଳ ପଞ୍ଚମୀ (ନାଗପଞ୍ଚମୀ) ଦିନ ଇଷ୍ଟ ଦେବୀଙ୍କର ପୂଜାବିଧି ନିୟମିତ ଭାବେ ସମାପନ କରି ଏହି ସାଧବମାନେ ଦେବୀଙ୍କ ପୀଠ ନିକଟସ୍ଥ ବଙ୍ଗୋପସାଗର ଉପକୂଳସ୍ଥ ରେଓ-ସୁନାପୁର ବନ୍ଦରଠାରୁ ବାଣିଜ୍ୟ ଯାତ୍ରାର ଶୁଭାରମ୍ଭ କରି ଭାରତର ଦକ୍ଷିଣ ପୂର୍ବ ଉପକୂଳ ଅଞ୍ଚଳରେ ନୌବାଣିଜ୍ୟ କରୁଥିଲେ । ଦକ୍ଷିଣରେ ବିଶାଖାପଟ୍ଟଣ, ରାଜମହେନ୍ଦ୍ରି, ତତ୍‌କାଳୀନ ମାନ୍ଦ୍ରାଜ ପ୍ରଦେଶର ଉପକୂଳ ଅଞ୍ଚଳ ସମେତ ବଙ୍ଗୋପସାଗର ମଧ୍ୟସ୍ଥ ଦ୍ୱୀପପୁଞ୍ଜମାନଙ୍କରେ ବ୍ୟବସାୟ କରୁଥିଲେ । ଏମାନେ ସାଧାରଣତଃ ଚୈତ୍ରମାସର ପ୍ରଥମ ରବିବାର ଦିନ ନିଜ ନିଜ ଅଞ୍ଚଳକୁ ଫେରି ଆସୁଥିଲେ । ଏମାନଙ୍କ ଯାତ୍ରାର ଶୁଭକାମନା କରି ଝିଅମାନେ ସାଧବଝିଅ ଚୈତ୍ରମାସର ସବୁ ରବିବାର ଦିନ 'ଖରଖରେଇ' ଓଷା ପାଳନ କରୁଥିଲେ । କଳିଙ୍ଗର ନୌବାଣିଜ୍ୟ ପରମ୍ପରା ବୁଲିଯାଇଛି

କିନ୍ତୁ ସାଧବଝିଅ (ବର୍ତ୍ତମାନ ସାହୁ ବ୍ରାହ୍ମଣ ଘରର ଝିଅମାନେ) ନାଗପଞ୍ଚମୀ ଜହ୍ନିଓଷା ଏବଂ ଖରଖରେଇ ଓଷାମାନ ଏ ଅଞ୍ଚଳରେ କରିଆସୁଛନ୍ତି ।

ଦେବୀ ଏଠାଲୋକଙ୍କ ସାମାଜିକ ଜୀବନ ସହିତ ସଂଶ୍ଳିଷ୍ଟଥିବା ଘଟଣା ଏଠାକାର କଥିତ ଏକ କିମ୍ବଦନ୍ତୀରୁ ଅନୁମିତ ହୁଏ । ବିବାହବ୍ରତ ଇତ୍ୟାଦି ଉତ୍ସବ ଗୁଡ଼ିକରେ ଏ ଅଞ୍ଚଳବାସୀ ଦେବୀଙ୍କୁ ଗୁଆପାନ ଆଦି ଜରିଆରେ ପୂଜା ଆରାଧନା ପୂର୍ବକ ନିମନ୍ତ୍ରଣ ଜଣାଉଥିଲେ । ଯେଉଁମାନେ ନିଜ ଉତ୍ସବ ଲାଗି ଗହଣାପତ୍ର ଓ ଭୋଜି ସାମଗ୍ରୀ ଆବଶ୍ୟକ ବୋଧ କରୁଥିଲେ, ସେମାନେ ଦେବୀଙ୍କ ଅନୁଗ୍ରହରୁ ସେ ସବୁ ମଧ୍ୟ ପାଇ ପାରୁଥିଲେ । ଭକ୍ତପକ୍ଷରେ ନିଜର ଆବଶ୍ୟକ ସାମଗ୍ରୀର ଏକ ତାଲିକା ପ୍ରସ୍ତୁତ କରିବାକୁ ହେଉଥିଲା । ରାତିରେ ପୂଜାବିଧି ଆରାଧନାର ସମାପ୍ତି ପରେ ତାଲିକାଟି ପୂଜାପାତ୍ର ଉପରେ ନେଇ ଦେବୀଙ୍କ ସମ୍ମୁଖ ଭାଗରେ ରଖି ଉକ୍ତ ମନ୍ଦିରର ଦ୍ୱାର ବନ୍ଦକରି ଚାଲି ଆସୁଥିଲେ । ପରଦିନ ସକାଳେ ଦେବୀ ପ୍ରସନ୍ନା ହୋଇ ଭକ୍ତର ଆବଶ୍ୟକୀୟ ସମସ୍ତ ସାମଗ୍ରୀ ଦେଇ ପାରୁଥିଲେ । ଉତ୍ସବ ସମାପନ ପରେ ଏମାନେ ଦେବୀଙ୍କ ଅନୁଗ୍ରହରୁ ପ୍ରାପ୍ତ ସମସ୍ତ ସାମଗ୍ରୀ ପୁଣି ମନ୍ଦିରରେ ଫେରାଇ ଆସୁଥିଲେ । ପରବର୍ତ୍ତୀକାଳରେ ଜଣେ ଭକ୍ତ ଲୋଭବଶତଃ ଦେବୀଙ୍କ ପ୍ରଦତ୍ତ ସାମଗ୍ରୀ ସବୁ ଫେରାଇ ନଥିଲା । ଫଳରେ ସେହି ଦିନଠାରୁ ଦେବୀ ଆଉ ପ୍ରସନ୍ନା ହୋଇ ଉତ୍ସବଲାଗି ଆବଶ୍ୟକୀୟ ସାମଗ୍ରୀ ପ୍ରଦାନ କରୁନାହାନ୍ତି । ଏହି ପାପାଚରଣ ଯୋଗୁଁ ସହର ଉପରେ ଦେବୀଙ୍କ କୋପଦୃଷ୍ଟି ପଡି ଜନକ୍ଷୟ ଘଟିଲା । ଫଳରେ ଇଚ୍ଛାପୁର ଓ ବ୍ରହ୍ମପୁର ଲୋକେ ଚାଲିଯାଇଥିଲେ ବୋଲି ଶୁଣାଯାଏ ।

ମନ୍ଦିର ନିର୍ମାଣ ପୂର୍ବରୁ ପୁରୀରାଜା ଶ୍ରୀ ଶ୍ରୀ ପୁରୁଷୋତ୍ତମ ଦେବ କାଞ୍ଚି ବିଜୟ କରି ଫେରିବା ସମୟରେ ମନ୍ତ୍ରୀଡଠାରେ ସୈନ୍ୟ ସାମନ୍ତ ସହ ମା'ଙ୍କ ପୀଠ ନିକଟରେ ବିଶ୍ରାମ ନେଇଥିଲେ । ସେଠାରେ ରାଜାଙ୍କ କିଞ୍ଚିତ ଆର୍ଥିକ ଅଭାବ ଘଟିବାରୁ, ସେ କାହାକୁ ଆର୍ଥିକ ସାହାଯ୍ୟ ପାଇଁ ନିବେଦନ କରିବେ, ଏହି ଦୁଶ୍ଚିନ୍ତାରେ ନିମଗ୍ନ ଥିବା ସମୟରେ ସ୍ୱୟଂ ଦେବୀ ଆବିର୍ଭୂତ ହୋଇ ରାଜାଙ୍କୁ ତାଙ୍କର ଭକ୍ତଙ୍କ ଜରିଆରେ ଆର୍ଥିକ ସାହାଯ୍ୟ କରିଥିଲେ । କିନ୍ତୁ ମହାରାଜା କାଳେ ଭୁଲିଯିବେ, ଏହି ଦୃଷ୍ଟିରୁ ତାଙ୍କର

ନଗରୁ ଖଣ୍ଡିଏ ବାଜ ନିଶାନ ସ୍ୱରୂପ ଭକ୍ତଙ୍କ ପାଖରେ ରଖିଦେଇ ଯାଇଥିଲେ ଏବଂ ପୁଣି ଫେରିବା ପରେ ଉକ୍ତଧନ ଫେରାଇ ଦେବାପାଇଁ ପ୍ରତିଶ୍ରୁତି ଦେଇଥିଲେ । ସମୟାନୁକ୍ରମେ ରାଜା ତାହା ଭୁଲିଯାଇଥିଲେ । ହଠାତ ଦିନେ ଦେବୀ ସ୍ୱପ୍ନରେ ଉକ୍ତ ଧନ କଥା ମନେ ପକାଇ ଦେଇଥିଲେ । ଘାଟ କନାରେ ଘୋଡ଼ାଇ ସାଇତି ରଖା ଯାଇଥିବା ରାଜାଙ୍କ 'ନିଶବାଜ' (ନିଶାନ) ଖଣ୍ଡିକ ଧରି ବ୍ରାହ୍ମଣ ଭକ୍ତମାନେ ମଧ୍ୟ ଯାଇ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହୋଇଥିଲେ । କିନ୍ତୁ ଦେବୀ ଉକ୍ତଧନ ନ ନେବା ପାଇଁ କହିଥିଲେ ଏବଂ ତା ବଦଳରେ ଶ୍ରୀମନ୍ଦିରରେ 'ମହୁରି ବାଜା'ର ପ୍ରଚଳନ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଆଜି କେତେକଙ୍କ ମତରେ ଏହା 'ତେଲେଙ୍ଗାବାଜା' ଭାବେ ସେହି ଦିନଠାରୁ ଆଜି ପର୍ଯ୍ୟନ୍ତ ଶ୍ରୀଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ପ୍ରଚଳନ ରହିଛି । ସେହି ଦିନଠାରୁ ଏହି ସାଧବ ବ୍ରାହ୍ମଣମାନେ ସାହୁକାର ଓ ସାହୁ ବ୍ରାହ୍ମଣ ନାମରେ ନାମିତ ।

## ଶ୍ରୀ ଶ୍ରୀ ସିଦ୍ଧ ଭୈରବୀଙ୍କ ମାହାତ୍ମ୍ୟ

ଦେବୀଙ୍କର ମାହାତ୍ମ୍ୟ ମଧ୍ୟ ଏ ଅଞ୍ଚଳରେ ବେଶ୍ ପରିଚିତ । ନିଃସନ୍ତାନମାନେ ପୁତ୍ରକନ୍ୟାପ୍ରାପ୍ତି ଆଶାରେ ବର୍ଷର ସବୁ ସଂକ୍ରାନ୍ତି ଦିନ ଉପବାସ ରହି ନିଷ୍ଠାପରଭାବେ ଦେବୀଙ୍କ ସେବାପୂଜା କରନ୍ତି । ବ୍ୟାଘ୍ର ମୁଖରୁ ଫାଶୀଖୁଣ୍ଟରୁ, କୋର୍ଟକଚେରୀମାମଲାଦି ଏବଂ ବିଭିନ୍ନ ଆପଦ ବିପଦରୁ ବହୁଜନ ଦେବୀଙ୍କ କୃପା ଲାଭକରି ରକ୍ଷା ପାଇଥିବା ବହୁଳ ଦୃଷ୍ଟାନ୍ତ ରହିଛି । ଏମାନଙ୍କ ମଧ୍ୟରୁ ଦେବୀଙ୍କ ଅନୁଗ୍ରହ ଅଧିକାଂଶ ପାଇଥିବା ପ୍ରତ୍ୟକ୍ଷ ପ୍ରମାଣ ଏଠାକାର ଲୋକେ ଦେଉଥାନ୍ତି । ଦୁଃସାଧ୍ୟରୋଗ, ବ୍ୟାଧି ଓ ଶୋକରୁ ମୁକ୍ତି ପାଇବା, ନିଜର ଅଭିଷ୍ଟ ସିଦ୍ଧ କରିବା, ନିଜପୁତ୍ର କନ୍ୟାଙ୍କର ଉଜ୍ଜ୍ୱଳ ଭବିଷ୍ୟତ ଆଶା କରିବା ସଙ୍ଗେ ସଙ୍ଗେ ସେମାନଙ୍କର ଚାକିରି ପାଇଁ ଏବଂ ବିବାହ ସମ୍ପର୍କେ ଅନୁକୂଳ ଆଶିର୍ବାଦ ପ୍ରାପ୍ତି ହୋଇଥିବା ଦୃଷ୍ଟାନ୍ତମାନ ମଧ୍ୟ ଏଠାରେ ମିଳେ । ଦୂରଦୂରାନ୍ତରୁ ବହୁବ୍ୟକ୍ତି (ଆନ୍ଧ୍ରଠାରୁ ବଙ୍ଗଳା ଦେଶ) ଶ୍ରୀ ସିଦ୍ଧ ଭୈରବୀଙ୍କ ବ୍ରତ ଉପବାସ ଆଦି ପାଳନ କରି ଅତି ନିଷ୍ଠାର ସହ ଅଧିଆପଡ଼ି ସେମାନଙ୍କ ଅଭିଷ୍ଟ ପ୍ରାପ୍ତି ହୋଇଥାନ୍ତି ।

ବହୁତ ଦିନ ତଳର କଥା । ବୋଧହୁଏ ମୁସଲମାନମାନଙ୍କ ରାଜତ୍ୱ ସମୟକାଳ । ପ୍ରବାଦ ଅଛି, ଏକଦା ଜଣେ ନବାବଙ୍କ ଗୋଟିଏ ବୃହତ ଲୁଣଗୋଲା ମନ୍ତ୍ରୀଡ ନିକଟସ୍ଥ ସୁରଳ ସୁମାଣ୍ଡି ଗ୍ରାମରେ ଥିଲା । ସେହି କାର୍ଯ୍ୟାଳୟ ନଥିପତ୍ର ଓ ହିସାବ ଖାତାଗୁଡିକ ଚୋରି ହୋଇ ଯାଇଥିଲା । ନବାବ ତାଙ୍କ ଅଧିନସ୍ଥ କର୍ମଚାରୀମାନଙ୍କୁ ଉକ୍ତ ଅପହୃତ ହୋଇଥିବା ଖାତା ପତ୍ରର ଅନ୍ୱେଷଣ ପାଇଁ ନିର୍ଦ୍ଦେଶ ଦେଲେ । ସେମାନଙ୍କ ମଧ୍ୟରୁ ଜଣେ ବିଶ୍ୱସ୍ତ କର୍ମଚାରୀ, ନବାବଙ୍କୁ ନିକଟସ୍ଥ ମନ୍ତ୍ରୀଡ଼ ପୀଠର ଶ୍ରୀ ଶ୍ରୀ ସିଦ୍ଧ ଭୈରବୀଙ୍କ ମାହାତ୍ମ୍ୟ ବିଷୟ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଦେବୀଙ୍କୁ ଉକ୍ତ ବିଷୟ ଜଣାଇବା ପାଇଁ ଅନୁରୋଧ କରିଥିଲେ । ନବାବ ତାଙ୍କର ଅନୁରୋଧ ରକ୍ଷା କରି ସେଠାକୁ ଯାଇ ପୂଜକ ମାଳୀମାନଙ୍କ ଦ୍ୱାରା ପୂଜାବିଧି ଓ ଆରାଧନାରେ ଦେବୀଙ୍କୁ ସନ୍ତୁଷ୍ଟ କରାଇଥିଲେ । ଦେବୀ ପ୍ରସନ୍ନା ହୋଇ ନବାବଙ୍କ ହିସାବ ଖାତାପତ୍ର ଗୁଡିକ ବଙ୍ଗୋପସାଗର ଗର୍ଭରେ ପଡିଥିବା କଥା ସୂଚାଇ ଦେଇଥିଲେ । ନବାବ ବିନୟ ଭାବେ ଅନୁନୟ ହୋଇ ପ୍ରାର୍ଥନା କରିଥିଲେ ଏବଂ ସେ ଗୁଡିକର ଉଦ୍ଧାର ନିମିତ୍ତ ଆଶା ପ୍ରକାଶ କଲେ, ଦେବୀ ସ୍ୱୟଂ ସମୁଦ୍ର ଗର୍ଭକୁ ଯାଇ ସେ ଗୁଡିକ ଉଦ୍ଧାର କରିଆଣି ନବାବଙ୍କ ସମ୍ମୁଖରେ ରଖି ଦେବୀ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ ।

ଆଉ ଦିନକର ଘଟଣା । ନବାବଙ୍କ ସ୍ତ୍ରୀ ରାଣୀ ଶୁଦ୍ଧସ୍ନାନ ପାଇଁ ନଦୀର ସନ୍ନିକଟ ପୋଖରୀକୁ ଯାଇଥିଲେ । ନିଜର ସ୍ୱର୍ଣ୍ଣ ଅଳଂକାର ଗୁଡିକ ପୋଖରୀ ଘାଟରେ ରଖି ସ୍ନାନ କରିବା ପାଇଁ ପାଣି ଭିତରକୁ ଗଲେ । ସ୍ନାନ କରିବା ସମୟରେ ଗୋଟିଏ କାକ ଆସି ସେଥିରୁ ସ୍ୱର୍ଣ୍ଣ ହାରଟି ତା'ର ଥଣ୍ଟରେ ନେଇଗଲା । ରାଣୀ ସ୍ନାନକରି ଆସି ହାରଟି ସେଠାରେ ନଥିବାରୁ ଅବାକ୍ ହୋଇ ଯାଇଥିଲେ । ଦାସୀମାନଙ୍କୁ ଏହି ସମ୍ପର୍କେ ପରାମର୍ଶ କରିବା ସଙ୍ଗେ ସଙ୍ଗେ ଅପହୃତ 'ସୁନାହାର' ବିଷୟ ନବାବଙ୍କୁ ଜଣାଇଥିଲେ । ସ୍ୱର୍ଣ୍ଣଚୋରୀ ମହାପାପ ଓ ଦୋଷାବହ ବୋଲି ଜାଣି ବିଜ୍ଞ ପଣ୍ଡିତମାନଙ୍କୁ ପଚାରିବାରୁ ସେମାନେ ମଧ୍ୟ ରାଜାଙ୍କ ମତ ସହ ଏକମତ ହୋଇଥିଲେ । ନବାବ ମହାଦୁଃଖରେ ଏହାର ପ୍ରତିକାର ବିଷୟ ପ୍ରଶ୍ନ କରିବାରୁ, ପଣ୍ଡିତମାନେ ନିକଟସ୍ଥ ଶ୍ରୀ ଶ୍ରୀ ସିଦ୍ଧ ଭୈରବୀଙ୍କୁ ପୂଜା ବିଧିରେ ସନ୍ତୁଷ୍ଟ କରାଇବା ପାଇଁ ଅନୁରୋଧ ଜଣାଇଥିଲେ । ନବାବ ପଣ୍ଡିତମାନଙ୍କ

ପରାମର୍ଶ କ୍ରମେ ମନ୍ତ୍ରୀଡ଼ ଯାଇ ଦେବୀଙ୍କୁ ପୂଜାବିଧି ଓ ଆରାଧନା କରି ପ୍ରସନ୍ନ କରାଇଥିଲେ ଏବଂ ଅପହୃତ ସ୍ୱର୍ଣ୍ଣଦ୍ୱାର ପ୍ରାପ୍ତି ନିମିତ୍ତ ପ୍ରାର୍ଥନା କରିଥିଲେ । ଦେବୀ ପ୍ରସନ୍ନ ହୋଇ ସ୍ୱର୍ଣ୍ଣଦ୍ୱାରଟି ସହର ନିକଟବର୍ତ୍ତୀ ବୁଢ ବଟବୃକ୍ଷର କୌଣସି ଏକ ଡାଳରେ କାକଟିଏ ଆଣି ରଖିଦେଇଥିବା କଥା କହି ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ନବାବ ଅତି ଖୁସି ହୋଇ ସ୍ୱର୍ଣ୍ଣଦ୍ୱାରର କେତେକାଂଶ ବିନିଯୋଗ କରି ଏଠାରେ ଏକ ବିସ୍ତର ପୁଷ୍କରିଣୀ ଖନନ କରିଥିଲେ ଏବଂ ରାଣୀଙ୍କ ନାମରେ 'ରାଣୀବନ୍ଧ' ବୋଲି ନାମାଙ୍କିତ କରିଥିଲେ । ଅଦ୍ୟାବଧି ସେହି ପୁଷ୍କରିଣୀଟି ଶହ ଶହ ବର୍ଷଧରି ପଙ୍କ ଉଦ୍ଧାର କରାଯାଇନଥିଲେ ମଧ୍ୟ ସେଠିକାର ବାସିନ୍ଦା ମାନଙ୍କୁ ନିର୍ମଳ ପାନୀୟ ଜଳ ଯୋଗାଇ ପାରୁଛି । କୌଣସି ଋତୁରେ ସେହି ପୁଷ୍କରିଣୀରୁ ଜଳ ଶୁଖେନାହିଁ । ପ୍ରବାଦ ଅଛି, କୁଣ୍ଡିଏ ମାଟି ଖୋଳିବା ପାଇଁ ପୁରୁଣା ଏକ ପଇସା ଦିଆଯାଇଥିଲା ଏବଂ ଯାନବାହାନ ନଥିବା ସମୟରେ ୧୦୮ ଭାର ଗଙ୍ଗାଜଳ ଅଣାଯାଇ ଏହି ପୋଖରୀଟି ପ୍ରତିଷ୍ଠା କରାଯାଇଥିଲା । ତତ୍ ସଙ୍ଗେ ସଙ୍ଗେ ସେକାଳରେ ୨୫ ଏବଂ ୪୫ ଏକର ବିସ୍ତୃତ ଦୁଇଟି ଅବାଟ ପୋଖରୀ ସମେତ ଆହୁରି ୮ଗୋଟି ପୁଷ୍କରିଣୀ ଦେବୀଙ୍କ କୃପାରୁ ଭକ୍ତମାନଙ୍କ ସୁବିଧା ନିମିତ୍ତ ଖୋଳା ଯାଇଛି ଏବଂ ସେଗୁଡିକ ଅଦ୍ୟାବଧି ରହିଛି । ଆଉ ଗୋଟିଏ ପ୍ରବାଦ ଅଛି, ଜନୈକ ମନ୍ତ୍ରୀଡ ନିବାସୀ ସାହୁ ବ୍ରାହ୍ମଣ ଆବଶ୍ୟକ ହେବାରୁ ଦେବୀଙ୍କ ପୂଜା ଆରାଧନା ପୂର୍ବକ ପ୍ରସନ୍ନ କରାଇ ସୁନା ଗହଣା କେତେକ ପାଇଥିଲେ । କିନ୍ତୁ ସେ ଉକ୍ତ ସୁନା ଗହଣା ଗୁଡ଼ିକ ଫେରାଇ ନଥିବାରୁ ଦେବୀ କ୍ରୋଧାନ୍ୱିତ ହୋଇ ଅଶ୍ୱାରୂଢ଼ ପୂର୍ବକ ତା'ର ଦ୍ୱାର ଦେଶରେ ପହଞ୍ଚିଲେ ଏବଂ ସବୁ ଗହଣା ଗୁଡ଼ିକ ଫେରାଇବା ପାଇଁ କହିଥିଲେ । କିନ୍ତୁ ସର୍ବହରା ବ୍ରାହ୍ମଣ ନଫେରାଇବା ଯୋଗୁଁ ତାକୁ ଅଭିଶାପ ଦେଇଥିଲେ ଏବଂ ବିରକ୍ତ ହୋଇ ଗୋଟିଏ ପଥର ଗୋଡ଼ ରାଗରେ ସେହି ଗ୍ରାମର ଶେଷ ଭାଗରେ ଫୋପାଡ଼ି ଅନ୍ତର୍ଦ୍ଧାନ ହୋଇଥିଲେ । ଏହି ସ୍ୱର୍ଣ୍ଣ ଅଳଂକାର ଅପହରଣ ଦିନ ଠାରୁ ମନ୍ତ୍ରୀଡ଼ ସହର ଭାଙ୍ଗିଯାଇଥିଲା । ମନ୍ତ୍ରୀଡ ଗୁଡ଼ ଲୋକେ ବ୍ରହ୍ମପୁର ଚାଲିଯାଇ ଥିଲେ । ଉତ୍କଳ ପ୍ରସଙ୍ଗରେ ପ୍ରକାଶିତ" ଏଗାରବାଡା ସ୍ୱାମୀଙ୍କ ତୀର୍ଥଯାତ୍ରା" ପ୍ରବନ୍ଧରେ ଲେଖାଥିଲା "ବ୍ରହ୍ମପୁର ଗୋଟିଏ ଗାଁ ଏବଂ ମନ୍ତ୍ରୀଡ ଏକ ବଡ ସହର" । କଥା ମଧ୍ୟ ଅଛି–" ମନ୍ତ୍ରୀଡ ଭାଙ୍ଗି ବ୍ରହ୍ମପୁର ଏବଂ ଗଂଜାମ ଭାଙ୍ଗି ଛତ୍ରପୁର" ସହର ହୋଇପାରିଛି । ଦେବୀ

ଫୋପାଡ଼ ଥିବା ପଥର ଗୋଡ଼ିଟି ବର୍ତ୍ତମାନ ଏକ ପାହାଡ଼ ଆକାର ଧାରଣ କରିଛି । ଦେବୀଙ୍କ ଅଲୌକିକ ଶକ୍ତି ଯୋଗୁଁ ଦିନକୁ ଦିନ ଏହି ପଥରଟି ବଢ଼ିବାକୁ ଲାଗିଛି ବୋଲି ଲୋକେ କହନ୍ତି ।

ଅନେକ ଦିନ ପରେ ପୁଣି ଦେବୀ ତାଙ୍କର ଭକ୍ତମାନଙ୍କୁ ଅଶରୀରୀ ବାଣୀ ଦ୍ୱାରା ନିର୍ଦ୍ଦେଶ ଦେଲେ ଯେ, ତାଙ୍କ ପୀଠର ପୂର୍ବଭାଗରେ ସ୍ୱର୍ଗର ସକଳ ଅମର ଦେବତାମାନଙ୍କ ମନ୍ଦିର ନିର୍ମାଣ ହେବ, ତାଙ୍କ ସମ୍ମୁଖରେ ଅହରହ ମହାମନ୍ତ୍ର ଗାନ କରିବାକୁ ହେବ, ବିଶେଷ ପର୍ବପର୍ବାଣି ସହ ପ୍ରତ୍ୟେକ ସଂକ୍ରାନ୍ତି ଦିନ ନିୟମିତ ବିଧିବଦ୍ଧଭାବେ ଉତ୍ସବସହ ପୂଜା ଆରାଧନା, (ସଂଧ୍ୟା ୭ ଘଣ୍ଟାଠାରୁ ମଧ୍ୟରାତ୍ର ପର୍ଯ୍ୟନ୍ତ ଦେବୀଙ୍କ ମାର୍ଜନା, ମହାସ୍ନାନ, ଷୋଡ଼ଶ ଉପଚାର ସହ ପୂଜା, ନବଗ୍ରହ ପୂଜା, ଭାଗବତ ପାରାୟଣ, ଶାନ୍ତିହୋମ, ବେଢ଼ାପରିକ୍ରମା ସହ ବ୍ରାହ୍ମଣ ଭୋଜନ ଇତ୍ୟାଦି) କରାଯିବାକୁ ହେବ । ଏହି ପୂଜାର ନିର୍ଦ୍ଦେଶ ବ୍ରହ୍ମପୁରର ଦୁଇଜଣ ଉତ୍ସାହୀ ଭକ୍ତଙ୍କୁ ତା-୧୪-୧୦-୧୯୭୧ ମସିହା ଗର୍ଭଣା ସଂକ୍ରାନ୍ତି ଦିନ ରାତ୍ର ଶୟନାବସ୍ଥାରେ ମିଳିଥିଲା ବୋଲି ଜଣାଯାଏ । ସେଥିପାଇଁ ବ୍ରହ୍ମପୁରରୁ ଯାଇ ଅନ୍ୟ ୧୪ ଜଣ ଭକ୍ତଙ୍କ ସହଯୋଗ ନେଇ ପଣ୍ଡିତମାନଙ୍କ ଗହଣରେ ତାପରଠାରୁ ସଂକ୍ରାନ୍ତି ଦିନ ବେଢ଼ା ପରିକ୍ରମା ଅନୁଷ୍ଠାନ ଆରମ୍ଭ କରିଥିଲେ ।

ଗତ ଦୁଇବର୍ଷ ତଳେ ମନ୍ତ୍ରୀଡ଼ ନିକଟବର୍ତ୍ତୀ ଅଞ୍ଚଳର କେତେକ ଅଧିବାସୀ, ବ୍ରହ୍ମପୁର ସହରର କେତେକ ଉଦ୍ୟମଶୀଳ ସହଯୋଗୀ ଭକ୍ତଙ୍କ ପ୍ରଚେଷ୍ଟାରେ ତା-୧୪-୧୦-୧୯୭୩ ମସିହାରେ ଗର୍ଭଣା ସଂକ୍ରାନ୍ତି ଦିନ ମହାଶକ୍ତି ଶ୍ରୀ ଶ୍ରୀ ସିଦ୍ଧଭୈରବୀଙ୍କ କୃପାରୁ "ଶ୍ରୀ ଶ୍ରୀ ଶ୍ରୀ ସିଦ୍ଧଭୈରବୀ ସଂକ୍ରାନ୍ତି ପୂଜା କମିଟି" ଗଠନ କରାଯାଇ ମେଢ଼ମଣ୍ଡପାଦି ନିର୍ମାଣ, ଦେବୀଙ୍କ ପୂଜା ଅର୍ଚ୍ଚନା ସହ ମନ୍ଦିର ତଥା ଦେବାୟତନର ସର୍ବାଙ୍ଗୀନ ଉନ୍ନତି କରାଯାଉଛି । ଏମାନେ ଦେବୀଙ୍କ ମୂଳପୀଠ ତଥା ମନ୍ଦିରର ପଶ୍ଚାତଭାଗରେ ଅବସ୍ଥିତ ମାନସ ବଟବୃକ୍ଷ ନିକଟରେ ହର ଗୌରୀ ଦେବୀଙ୍କୁ ମଧ୍ୟଭାଗରେ ସଂସ୍ଥାପନ କରି ତାଙ୍କ ଚତୁପାର୍ଶ୍ୱରେ ଆଉ ୧୦୭ ଗୋଟି ଛୋଟ ଛୋଟ ଦେବଦେବୀ ମନ୍ଦିର ନିର୍ମାଣ କରିବାର ଉଦ୍ୟମ କରୁଛନ୍ତି । ଏହି ବୃହତ ଯୋଜନାର ପ୍ରାକ୍ ପ୍ରସ୍ତୁତି ପ୍ରାୟ ସମ୍ପୂର୍ଣ୍ଣ ହେବାକୁ ଯାଉଛି । ନିକଟ ଭବିଷ୍ୟତରେ ଏହା

ପୂର୍ଣ୍ଣାଙ୍ଗ ରୂପ ପାଇବା ଆଶା କରାଯାଏ ଏବଂ ଦେବୀଙ୍କ କୃପାବଳରୁ ଏହି ପୀଠର ଆଧ୍ୟାତ୍ମିକ ଆକର୍ଷଣ ଆହୁରି ଅଧିକ ପ୍ରଭାବଶାଳୀ ହେବ ।

ଗତ ୧୪-୧୦-୧୯୭୫ ରେ ମନ୍ଦିର ତଥା ତାର ପରିସର ମଧ୍ୟରେ ଉନ୍ନୟନ କାର୍ଯ୍ୟ ଗୁଡ଼ିକର ଉନ୍ନତି ନିମିତ୍ତ ଆଉ ଗୋଟିଏ କମିଟି ଗଠନ କରାଯାଇ ନିମ୍ନଲିଖିତ ଉନ୍ନୟନ କାର୍ଯ୍ୟ ଗୁଡ଼ିକ ହାତକୁ ନିଆଯାଇ ସମ୍ପୂର୍ଣ୍ଣ କରାଯାଇ ପାରିଛି । (୧) ମନ୍ଦିରର ମଧ୍ୟ ଭାଗରେ ଥିବା ଦେବୀଙ୍କ ପୀଠ ମାର୍ବଲ ପଥରରେ ପୁନଃ ନିର୍ମିତ ଓ ସୁସଜ୍ଜିତ (୨) ୨୮′ × ୨୨′ ଓସାର ବିଶିଷ୍ଟ ୧୪ ଗୋଟି ସ୍ତମ୍ଭ ସମ୍ବଳିତ ଆନନ୍ଦ ମଣ୍ଡପ ନିର୍ମାଣ । ମଣ୍ଡପର ଊର୍ଦ୍ଧ୍ୱ ଭାଗରେ ଦେବୀଙ୍କ ଚରିତାବଳୀ ଏବଂ ତନ୍ନ ଊର୍ଦ୍ଧ୍ୱରେ ଗଜଲକ୍ଷ୍ମୀ ମୂର୍ତ୍ତି ଖୋଦିତ ଓ ରଞ୍ଜିତ । ମଣ୍ଡପର ତଳ ଗୁଡ଼ିକ ମାର୍ବଲ ପଥରରେ ସଂଯୋଜିତ ଓ ମଧ୍ୟ ଭାଗରେ ଦେବୀଙ୍କ ଭଣ୍ଡାର (ହୁଣ୍ଡି) ଅବସ୍ଥିତ । ଏଥିରେ ଭକ୍ତମାନେ ଯଥୋଚିତ ଦାନ କରିଥାନ୍ତି ।

(୩) ଗତ ତା-୨୩-୭-୧୯୭୨ ମସିହା ମଧ୍ୟରାତ୍ରରେ ଅଷ୍ଟପ୍ରହର ନାମଯଜ୍ଞର ଶୁଭାରମ୍ଭ କରାଯାଇଥିଲା । ପୂଜା, ହୋମ ଇତ୍ୟାଦି ବୈଦିକ ରୀତିରେ ସମାପନ କରାଯାଇଥିଲା । ଶୁଭଦେବା ସ୍ଥାନରେ ଏକ ମଣ୍ଡଳ ତିଆର କରାଯାଇଥିଲା । ପୂଜାପରେ ଦେଖାଯାଇ ଥିଲା ଯେ, ଦେବୀଙ୍କ ଏକ ପାଦଚିହ୍ନ ସେହିବାଲି ମଣ୍ଡଳରେ ପଡ଼ିଥିଲା । ଏହା ସେହିଦିନ ଉପସ୍ଥିତ ସମସ୍ତ ଦର୍ଶକ ତଥା ଭକ୍ତ ସ୍ୱ ସ୍ୱ ଚକ୍ଷୁରେ ଦେଖିଥିଲେ । ଯଜ୍ଞ ମଣ୍ଡପର କାର୍ଯ୍ୟ ଶେଷ ହେଲା ପରେ ନିୟମାନୁଯାୟୀ ପ୍ରତିଷ୍ଠା କରାଯାଇ ଗତ ତା ୧୪-୪-୭୮ ମସିହା ମେଷ ସଂକ୍ରାନ୍ତି ଦିନ ଏହି ଦେବୀ ପୀଠରେ ଅଷ୍ଟ ପ୍ରହର ନାମ ଯଜ୍ଞ ଆରମ୍ଭ ହୋଇଥିଲା । ସେହିଦିନ ଠାରୁ ମାସର ପ୍ରତି ସଂକ୍ରାନ୍ତିରେ ଏହି ଅଷ୍ଟ ପ୍ରହର ନାମ ଯଜ୍ଞ ପାରମ୍ପରିକ ରୀତିରେ ପାଳିତ ହୋଇ ଆସୁଅଛି ।

(୪) ୧୯୭୭ ମସିହା ଡିସେମ୍ବର ମାସରେ ୭୦′×୧୭′ ବିଶିଷ୍ଟ କଲ୍ୟାଣୀ ମଣ୍ଡପର କାର୍ଯ୍ୟ ଶୁଭାରମ୍ଭ କରାଯାଇ ୧୯୭୯ ମସିହା ମାର୍ଚ୍ଚ ମାସରେ ସମ୍ପୂର୍ଣ୍ଣ କରାଯାଇଥିଲା । ଏହି ମଣ୍ଡପର ସମ୍ମୁଖ ଭାଗରେ ୧୦′×୧୫′ର

ଏକ ହୋମ କୁଣ୍ଡମଧ୍ୟ ସଜ୍ଜବେଷ୍ଟ ତିଆରି ହୋଇଛି । ଏଠାରେ ବିବାହ, ବ୍ରତ, ଶାନ୍ତି ହୋମ ଓ ପାଠ, ସଭା ସମିତି ଇତ୍ୟାଦି କରାଯାଇ ଥାଏ । ମଣ୍ଡପର କାନ୍ଥ ଗୁଡ଼ିକ ମାର୍ବଲ ପଥରରେ ଅଂକିତ ଏବଂ ତଳଭାଗ ମୋଜାଇକରେ ତିଆରି, ସର୍ବସାଧାରଣଙ୍କ ସୁବିଧା ପାଇଁ ବିଜୁଳି ଶକ୍ତିର ଆଲୋକରେ ଆଲୋକିତ ଏବଂ ୩ ଗୋଟି ବିଜୁଳି ପଙ୍ଖା ବିନିଯୋଗ କରାଯାଇଛି । ଏଠାରେ ଉପରୋକ୍ତ ଶୁଭକାର୍ଯ୍ୟ ଗୁଡ଼ିକ କରିବା ପାଇଁ ଭକ୍ତଙ୍କୁ କିଛି ପଇସା (ଫିସ୍) ଦେବାକୁ ପଡ଼ିନଥାଏ । ଏହି ମଣ୍ଡପ ସମୀପରେ ଦେବୀଙ୍କର ଗନ୍ତାଘର (ଲକ୍ଷ୍ମୀ ଭଣ୍ଡାର) ନିର୍ମାଣ କରାଯାଇଛି, ଏଠାରେ ପୂଜାବିଧିର ଉପକରଣ, ଆସବାବପତ୍ର ଭକ୍ତ ମାନଂକର ଅଭୀଷ୍ଟ ପୂରଣପାଇଁ ଦାନକରିଥିବା ପଟବସ୍ତ୍ର ସ୍ୱର୍ଣ୍ଣାଳଂକାର ଇତ୍ୟାଦି ରଖାଯାଏ ।

(୫) ବେଢ଼ା ମଧ୍ୟରେ ଭକ୍ତମାନେ ରହିବା ପାଇଁ ଶ୍ରେଷ୍ଠ ଶ୍ରେଷ୍ଠ ୬ଗୋଟି ବଖରା ତିଆରି କରାଯାଇଛି, ଏହି ଧର୍ମଶାଳାକୁ ଭକ୍ତମାନଙ୍କୁ ଅତିକମ ଭଡ଼ାରେ ରହିବା ପାଇଁ ଦିଆଯାଇ ଥାଏ ।

(୬) ଦେବୀଙ୍କ ପୀଠକୁ ଯିବାପୂର୍ବରୁ ଏକ ସିଂହଦ୍ୱାର ୧୯୭୫ ମସିହାରେ ଶୁଭାରମ୍ଭ କରାଯାଇ ୧୯୭୮ ମସିହାରେ ସମ୍ପୂର୍ଣ୍ଣ କରାଯାଇ ଥିଲା । ଦେବୀଙ୍କ ସାମନା ଅଗ୍ରଭାଗରେ ଭଗବାନ ଶ୍ରୀ ରାମଚନ୍ଦ୍ର ନୀଳୋତ୍ପଳ ପୂଜାରେ ସନ୍ତୁଷ୍ଟ ହୋଇ ଚକ୍ଷୁଦାନ କରିବା ଚିତ୍ର ଏବଂ ପଶ୍ଚିମ ଭାଗରେ କାଶିକ୍ଷେତ୍ର ନିବାସୀ 'ମା' ଅନ୍ନପୂର୍ଣ୍ଣା ଦେବଦେବ ମହାଦେବଙ୍କୁ ଅନ୍ନଭିକ୍ଷା ଦେବା ଚିତ୍ର ଅଙ୍କନ କରାଯାଉଛି । ସିଂହ ଦ୍ୱାରର ମୁଖଶାଳାଟି ମାର୍ବଲ କାଚ ପଥରରେ ସଂଯୋଜିତ, ତାହାର କବାଟ ଗୁଡ଼ିକ କୌଣସି ଏକ ମୂଲ୍ୟବାନ ଧାତୁରେ ତିଆରି ଏବଂ ସିଂହଦ୍ୱାର ଆରମ୍ଭରେ ତିଆରି ହୋଇଥିବା ସିଂହ ଦୁଇଟି କେବଳ ଗୋଟିଏ ଗୋଟିଏ ପଥରରେ ତିଆରି କରାଯାଇ ସ୍ଥାପନ କରାଯାଇଛି । ଅନ୍ୟ ସିଂହଦ୍ୱାର ଅପେକ୍ଷା ଏହି ସିଂହଦ୍ୱାରଟି ଦେଖିବାକୁ ବଡ଼ ଚମତ୍କାର ଓ ବେଶ୍ ମନୋହର । 'ମା' ଅନ୍ନପୂର୍ଣ୍ଣା ଦେବୀଙ୍କ ଅପାର କରୁଣାରେ କୌଣସି କାଳେ ଏଠାରେ କୌଣସି ଭକ୍ତଙ୍କୁ ଅନ୍ନ ପ୍ରସାଦ ବଣ୍ଟନ ବେଳେ ଅଭାବ ଦେଖାଯାଇ ନାହିଁ ।

( ୭ ) ଶ୍ରୀ ଶ୍ରୀ ସିଦ୍ଧ ଭୈରବୀ ସଙ୍କ୍ରାନ୍ତି ପୂଜା କମିଟିଙ୍କ ଉଦ୍ୟମରେ ବିଶ୍ୱଶାନ୍ତି ଗାୟତ୍ରୀ ମହାଯଜ୍ଞ କରିବା ପାଇଁ ତା ୨୧ । ୧୨ । ୭୮ ମସିହା ଦିବା ଘ ୧୧-୩୫ ମିନଟ୍ ସମୟରେ କଷ୍ଟୁରି କଆଯାଇ ଏକ ଯଜ୍ଞ କମିଟି ଗଠନ କରାଗଲା ଏବଂ ଚାନ୍ଦା ସଂଗ୍ରହର ଅଭିଯାନ ଆରମ୍ଭ କରାଯାଇଥିଲା । ଏହି ବିଶ୍ୱଶାନ୍ତି ମହାଯଜ୍ଞଟି ୧୧ ଦିନ ଧରି ଅନୁଷ୍ଠିତ ହୋଇଥିଲା । ତା ୪ । ୪ । ୭୯ରୁ ଆରମ୍ଭ ହୋଇ ତା ୧୪ । ୪ । ୭୯ ମେଷ ସଂକ୍ରାନ୍ତି ଦିନ ପୂର୍ଣ୍ଣାହୁତି ଦିଆଯାଇଥିଲା ସେତିକ ବେଳେ ପ୍ରତିଦିନ ପ୍ରାୟ ୧୦ ହଜାର ଭକ୍ତ ସମେବେତ ହେଉଥିଲେ । ପ୍ରତ୍ୟହ ସମସ୍ତ ଭକ୍ତମାନଙ୍କୁ ବିନା ମୂଲ୍ୟରେ ପ୍ରସାଦ ବଣ୍ଟନ କରାଯାଉ ଥିଲା । ଏଥିରେ ୧୧୮ ଜଣ ବିଜ୍ଞ ପଣ୍ଡିତ (ପୁରୋହିତ) ମାନଙ୍କ ସହିତ ବହୁତ ସାଧୁ, ସନ୍ଥ, ସନ୍ୟାସୀ ଓ ବ୍ରହ୍ମଚାରୀ ଯୋଗ ଦେଇଥିଲେ । ଯଜ୍ଞ ଶେଷ ଦିନ ପ୍ରାୟ ୫୦ରୁ ୫୫ ହଜାର ଭକ୍ତ ସମବେତ ହୋଇଥିଲେ ଏବଂ ସମସ୍ତଙ୍କୁ ଯଜ୍ଞାନ୍ନ ବିତରଣ କରାଯାଇଥିଲା । ଏଥିରେ ପ୍ରାୟ ୨ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିଲା । ନିକଟବର୍ତ୍ତୀ ଗ୍ରାମାଞ୍ଚଳରୁ ପ୍ରାୟ ୧୦୦୦ ବସ୍ତା ଧାନ ସଂଗ୍ରହ କରାଯାଉଥିଲା ଏବଂ ଟଙ୍କା ଆକାରରେ ଲକ୍ଷାଧିକ ଟଙ୍କା ଦାନ ସ୍ୱରୂପ ଆଦାୟ ହୋଇଥିଲା । ଯଜ୍ଞର ପ୍ରଥମ ୧୦ ଦିନର ପୂଜା ପ୍ରସାଦ ଭକ୍ତ ମାନଙ୍କୁ ମାଗଣାରେ ବିତରଣ କରି ଦିଆଯାଇଥିଲା ଏବଂ ଶେଷ ଦିନର ପୂଜା ଦ୍ରବ୍ୟକୁ ବିକ୍ରୟ କରି ମନ୍ଦିରର ଉନ୍ନତି କଳ୍ପେ ଗଠନ କରାଯାଇଥିବା ପରିଚାଳନା କମିଟି ପ୍ରାୟ ଟ ୮୪, ୨୩୦ଙ୍କା ସଂଗ୍ରହ କରିପାରିଥିଲେ । ଏହି ଲବ୍ଧ ଟଙ୍କା ମନ୍ଦିର ଉନ୍ନୟନ କାର୍ଯ୍ୟ ପାଇଁ ଉଦ୍ଦିଷ୍ଟ ଥିଲା ।

ଏହି ଯଜ୍ଞ ପାଇଁ ସଂଗୃହୀତ ଟଙ୍କାରେ '୨୪ X ୨୪'ର ଏକ ନାମଯଜ୍ଞ ବେଦୀ ଏବଂ '୭୦ X ୧୬'ର ମଣ୍ଡପ ନିର୍ମାଣ କାର୍ଯ୍ୟ ସଙ୍ଗେ ସଙ୍ଗେ ୩୫୦' x ୨୫୦' ର ଗୋଟିଏ ବେଢ଼ା ତନ୍ମଧ୍ୟରେ ୫୫ x ୧୫'ର ଲକ୍ଷ୍ମୀ ଭଣ୍ଡାର ଘର ୭୦' x ୧୫'ର ରୋଷେଇ ଘର, ୧୫' x ୧୨'ର ଦୁଇଟି କାର୍ଯ୍ୟାଳୟ ଓ ଗୋଦାମ ଗୃହ ଏବଂ ପଶ୍ଚିମାଭିମୁଖୀ ପଞ୍ଚମୁଖୀ ଗାୟତ୍ରୀ ଦେବୀ ଓ ଧନଜା ଲକ୍ଷ୍ମୀଙ୍କର ମୂର୍ତ୍ତି ସହ ୧୪' X ୧୨' ରେ ଗୋଟିଏ ଗାୟତ୍ରୀ ସିଂହଦ୍ୱାର ନିର୍ମାଣ କରାଯାଇଥିଲା । ଏହି ବେଢ଼ା ମଧ୍ୟରେ ଶ୍ରୀଦେବୀ ଓ ଶ୍ରୀକୃଷ୍ଣଙ୍କର କୁଣ୍ଡ ଖୋଦିତ କରାଯାଇଛି ଏବଂ ବେଢ଼ା ମଧ୍ୟ ଚଟାଣକୁ

ସମ୍ପୂର୍ଣ୍ଣ ଭାବେ ସିମେଣ୍ଟରେ ଆଚ୍ଛାଦନ କରାଯାଉଛି । ବେଢ଼ା ମଧ୍ୟରେ ସ୍ଥିତ ଭଣ୍ଡାର ଗୃହକୁ ଲାଗି ଏକ ମାନସ ବୃକ୍ଷ ଅବସ୍ଥିତ । ଏହି ବୃକ୍ଷ ମୂଳରେ ଭକ୍ତମାନେ ସାଧନା କରି ସେମାନଙ୍କ ଅଭିଳଷିତ ସିଦ୍ଧି ଲାଭ କରିଥାନ୍ତି । ଗାୟତ୍ରୀ ମଣ୍ଡପ ଆଗରେ ଦେବୀଙ୍କର ବାହାନ ଗୋଟିଏ ପଥରର ତିଆରି ଏକ ପାଞ୍ଚଅଶ୍ୱର ମୂର୍ତ୍ତି ଅବସ୍ଥାପନ କରାଯାଇଛି ।

ଏହି ଯଜ୍ଞରେ ଅନେକ ମହାମାନ୍ୟ ବଶିଷ୍ଟ ବିଜ୍ଞ, ପଣ୍ଡିତ, ସାଧୁ, ମହାପୁରୁଷ ଓ ଭକ୍ତମାନେ ଯୋଗ ଦେଇଥିଲେ । ଡ: ରାଧାନାଥ ରଥ ମତ ପ୍ରକାଶ କରିଥିଲେ ଯେ, 'ତାଙ୍କର ଜୀବନ କାଳ ମଧ୍ୟରେ ଦେଖିଥିବା ଯଜ୍ଞମାନଙ୍କ ମଧ୍ୟରୁ ଏହା ପ୍ରଥମ' । ଏହି ମହାଯଜ୍ଞ ପରଠାରୁ ପ୍ରତ୍ୟେକ ବର୍ଷ ମେଷ ସଂକ୍ରାନ୍ତି ଦିନ ଦେବୀଙ୍କର ବାର୍ଷିକ ଉତ୍ସବ ପାଳନ କରାଯାଏ ।

ଏହି ଗାୟତ୍ରୀ ବିଶ୍ୱଶାନ୍ତି ମହାଯଜ୍ଞ ଆରମ୍ଭରୁ ପୂର୍ଣ୍ଣାହୁତି ଦିନ ପର୍ଯ୍ୟନ୍ତ ଏକ ବିଚିତ୍ର ଅଲୌକିକ ଘଟଣା ଘଟିଥିବା ଏଠାରୁ ଶୁଣାଯାଏ । ଯଜ୍ଞ ବେଳକୁ ଲକ୍ଷ୍ମୀ ଭଣ୍ଡାର ପାଖରୁ 'ନାଗସାପ'ଟିଏ ଯଜ୍ଞ କୁଣ୍ଡକୁ ଆସି ରହୁଥିଲା ଏବଂ ଯଜ୍ଞ କାର୍ଯ୍ୟ ସମାପନ ପରେ ସାପଟି ପୁଣି ଲକ୍ଷ୍ମୀ ଭଣ୍ଡାର ପାଖକୁ ଚାଲିଯାଉଥିଲା । ଏହି ଘଟଣାଟି ସମସ୍ତ ଦର୍ଶକଙ୍କ ମନରେ ଚହଲ ପକାଇ ଦେଇଥିଲା । ଏହି କଳି କାଳର ମାୟାପୂର୍ଣ୍ଣ ଦୌରାତ୍ମ୍ୟମାନଙ୍କ ଯୋଗୁଁ ଯଜ୍ଞର ସାମଗ୍ରୀ କାଳେ ଅପହରଣ ହୋଇଯିବ, ଏଦୃଷ୍ଟିରୁ ଏହି ସାପକୁ ଯଜ୍ଞକୁଣ୍ଡ ଓ ଲକ୍ଷ୍ମୀଭଣ୍ଡାରକୁ ଜଗାଇବା ପାଇଁ ଦେବୀ ପ୍ରେରଣ କରିଥିଲେ ବୋଲି ଲୋକ ମୁଖରୁ ଶୁଣାଯାଏ ।

( ୮ ) ଉକ୍ତ ପାଚେରୀଟି ୩୦୦'×୨୫୦' ବିଶିଷ୍ଟ ଅଟେ । ଏହାର ମଧ୍ୟ ଭାଗରେ ୨୬୩ଟି ନାରିକେଳ ବୃକ୍ଷ ରୋପଣ କରାଯାଇଛି । ଶ୍ରୀରାଧା କୁଣ୍ଡ ଖୋଳାଯାଇ ସ୍ଥାୟୀ ପାନୀୟ ଜଳ ଯୋଗାଣ ବ୍ୟବସ୍ଥା କରାଯାଇଛି । ଗାୟତ୍ରୀ ସିଂହ ଦ୍ୱାରକୁ ଲାଗି ଉତ୍ତରପାର୍ଶ୍ୱରେ ୧୦'×୨୦'ର ୯ ଗୋଟି ଆଶ୍ରୟ ଗୃହ, ୧୦'×୧୦'ର ଦୁଇଟି ଆଶ୍ରୟ ଗୃହ, ଗୋ'ବର୍ଦ୍ଧନ ଓ ସଂରକ୍ଷଣ ନିମିତ୍ତ ପ୍ରାୟ ୧୦୦'ର ଏକ ଗୋଶାଳା ତିଆରି କରାଯାଇ ୫ ଗୋଟି ଜର୍ସିଗାଈ ଏବଂ ଅନେକ ବଳଦ ସେଠାରେ ରଖାଯାଇ ପାଳନ କରାଯାଉଛି ।

ଏତଦ୍‌ ବ୍ୟତୀତ ସଂକ୍ରାନ୍ତି ଦିନ ଭୋଗ ବର୍ଣ୍ଣ ପାଇଁ ପୁରୁଷ ଓ ସ୍ତ୍ରୀ ମାନଙ୍କ ନିମିତ୍ତ ପୃଥକ ପୃଥକ ଦୁଇଟି ବର୍ଣ୍ଣୀ ଗୃହ, ସର୍ବସାଧାରଣଙ୍କ ସକାଶେ ରୋଷେଇ ଗୃହ ନିର୍ମାଣ କରାଯାଇଛି । ଏହି ବେଢ଼ା ମଧ୍ୟରେ ଏକ ବଟ ବୃକ୍ଷ ରୋପିତ କରାଯାଇଛି । ବିଭିନ୍ନ ସଂପ୍ରଦାୟର ଲୋକମାନେ ଏଠାରେ ଜାତିଆଣ ସଭା ସମିତି ମାନ କରନ୍ତି । ଏହି ବେଢ଼ାର ୩ ଦିଗରେ ୬ଟି ସିଂହ ମୂର୍ତ୍ତି ସହ ସିଂହଦ୍ୱାର କରାଯାଇଛି । ପଶ୍ଚିମକୁ ହରିହର, ଉତ୍ତରକୁ ବୈଷ୍ଣବୀ ଓ ଦକ୍ଷିଣକୁ ଯମୁନା ସିଂହଦ୍ୱାରମାନ ସ୍ଥାପନ କରାଯାଇ ନାମାଙ୍କିତ କରାଯାଇଛି । ଯମୁନା ସିଂହଦ୍ୱାରକୁ ଲାଗି ଏକ ଚୈତନ୍ୟ ସାଗର ଖୋଳାଯାଇଛି । ଏହି ସାଗରଟି ଖୋଳିବା ଦିନଠାରୁ କେବେହେଲେ ପାଣି ଶୁଖି ନାହିଁ ଏବଂ ଏହି ସାଗରରେ ଲୋକେ ପ୍ରତ୍ୟହ ଶୌଚ କାର୍ଯ୍ୟାଦି ସମାପନ କରିଥାନ୍ତି ।

( ୯ ) ଶ୍ରୀକ୍ଷେତ୍ରରେ ଗଜପତି ଶ୍ରୀ ଶ୍ରୀ ଶ୍ରୀ ଦିବ୍ୟସିଂହ ମହାରାଜ ଗତ ତା ୧୪ । ୪ । ୮୨ ମସିହା ମେଷ ସଂକ୍ରାନ୍ତି ଦିନ, ବାର୍ଷିକ ଉତ୍ସବ ପାଳନ ଅବସରରେ ଯୋଗ ଦେଇ ଚିରଦିନ ପାଇଁ ଅଖଣ୍ଡ ନାମ ସଂକୀର୍ତ୍ତନ ମହାଯଜ୍ଞ ଶୁଭାରମ୍ଭ କରିଥିଲେ । ଏହି ଅଖଣ୍ଡ ନାମ ସଂକୀର୍ତ୍ତନ ଅଦ୍ୟାବଧି ଚାଲିଛି । ଏଥିପାଇଁ ୨୮ ଜଣ ଅକର୍ମଣ୍ୟ ବ୍ୟକ୍ତିଙ୍କୁ ନିଯୁକ୍ତି ଦିଆଯାଇଛି । ସେମାନଙ୍କର ଭରଣ ପୋଷଣ ପାଇଁ ସକଳ ବ୍ୟବସ୍ଥା କରାଯାଇଛି । ଏହି ଅଖଣ୍ଡ ସଂକୀର୍ତ୍ତନ ଯୋଗୁଁ ଏହି ଅଞ୍ଚଳର ଅଧିବାସୀଙ୍କ ଆଶାତୀତ ଉନ୍ନତି ସମସ୍ତ କ୍ଷେତ୍ରରେ ଘଟୁଛି ବୋଲି ଲୋକେ କହନ୍ତି ।

ଏହି ଯାବତ୍‌ ଚନ୍ଦାର୍କେ ଅଖଣ୍ଡ ନାମ ମହାଯଜ୍ଞ ପାଇଁ ୩୫୩ ଜଣ ସଭ୍ୟଙ୍କୁ ନେଇ ଏକ ସଭା, ୫ଜଣ ସଭ୍ୟଙ୍କୁ ନେଇ ଏକ ପରିଚାଳନା କମିଟି ଗଠନ କରାଯାଇଛି । ଏଥିପାଇଁ ଇଚ୍ଛୁକ ଭକ୍ତମାନେ ଅନ୍ୟୂନ ଟ ୨୦୦୦/- ବ୍ୟାଙ୍କରେ ଜମା କରନ୍ତି । ପ୍ରତ୍ୟେକ ବର୍ଷ ଏପ୍ରିଲ ମାସରେ ପରିଚାଳନା କମିଟି ନିର୍ବାଚନ କରାଯାଇଥାଏ । ଏହି ସଭାର ଅଭିବୃଦ୍ଧି ପାଇଁ ଇଚ୍ଛୁକ ଭକ୍ତମାନେ ସଭ୍ୟ ହେବାପାଇଁ ଅନୁରୋଧ କରାଯାଇଛି ।

ଏତଦ୍‌ ବ୍ୟତୀତ ଏକ ମେଳନ ମଣ୍ଡପ ନିର୍ମାଣକାର୍ଯ୍ୟ ସଂପ୍ରତି ଚାଲିଛି । ଏଥିପାଇଁ ୧ଫୁଟ+୧ଫୁଟର ମାର୍ବଲ ପଥର ପ୍ରାୟ ୩୦୦ ଖଣ୍ଡ, ବାହ୍ୟ ପାଚେରି ବା ଘେରାକୁ ସିମେଣ୍ଟ ଏବଂ ଅନ୍ୟାନ୍ୟ ଉନ୍ନୟନ କାର୍ଯ୍ୟ ପାଇଁ ପ୍ରାୟ ୧୦୦୦ ବସ୍ତା ସିମେଣ୍ଟ ଆବଶ୍ୟକ ପଡ଼ୁଛି । ଏଣୁ ଯେଉଁ ଭକ୍ତମାନେ ସ୍ୱଚ୍ଛଳ ଓ ଇଚ୍ଛୁକ ତେବେ ଗୋଟିଏ ମାର୍ବଲ ପଥର କିମ୍ବା ୧ବସ୍ତା ସିମେଣ୍ଟ ଦାନ କରିବା ପାଇଁ ଉନ୍ନୟନ କମିଟି ଅନୁରୋଧ ପତ୍ର ସର୍ବସାଧାରଣ ପାଖରେ ଉପସ୍ଥାପନ କରିଛନ୍ତି ।

## ଉପସଂହାର—

ଦେବୀଙ୍କ ଆଶୀର୍ବାଦରୁ ଶ୍ରୀ ଶ୍ରୀ ଶ୍ରୀ ସିଦ୍ଧ ଭୈରବୀ ସଂକ୍ରାନ୍ତି ପୂଜା କମିଟି ଗଠନ ପରେ ପରେ ତାଙ୍କ ଅଧିନତାରେ ସମସ୍ତ ପ୍ରକାର ଉନ୍ନୟନ କାର୍ଯ୍ୟ ସମାପନ ହେବା ସଙ୍ଗେ ସଙ୍ଗେ ବିଷୁବୋତ୍ସବ, ମେରୁଉତ୍ସବ, ମେଳଣଯାତ୍ରା, ନବଗ୍ରହ ପୂଜା, ହୋମଯଜ୍ଞ, ସଂକ୍ରାନ୍ତି ପୂଜା, ସାପ୍ତାହିକ ପୂଜା ଓ ଅନ୍ୟାନ୍ୟ ଯାତ୍ରାଦି ସହାସମାରୋହରେ ଅତି ଶୃଙ୍ଖଳାର ସହ କରାଯାଉଛି ।

ଏହା ବ୍ୟତୀତ ପ୍ରତି ସଂକ୍ରାନ୍ତିରେ ଆସୁଥିବା ହଜାର ହଜାର ନରନାରୀ (ଭକ୍ତ)ଙ୍କ ପାଇଁ ଏକଟଙ୍କାରେ ଏକ ପ୍ରସାଦ ପୁଡ଼ିଆ ବିକ୍ରି କରିବାରେ ବ୍ୟବସ୍ଥା କରାଯାଇଛି । ଏଥି ନିମିତ୍ତ କମିଟିଙ୍କର ଉଦ୍ୟମ ପ୍ରଶଂସନୀୟ, କହିବା ବାହୁଲ୍ୟମାତ୍ର । ଦୈନନ୍ଦିନ ପରିଚାଳନା ଓ ଉନ୍ନୟନ କାର୍ଯ୍ୟ ନିମିତ୍ତ ସୁଚିନ୍ତିତ ପରିକଳ୍ପନାର ଉଦ୍ୟମ ଶ୍ରୀଯୁକ୍ତ ସଦାନନ୍ଦ ପାଣିଗ୍ରାହୀ ଏବଂ ବୈଶ୍ୟରାଜୁ ଲକ୍ଷ୍ମୀନାରାୟଣ ରାଜୁଙ୍କ ଅକୁଣ୍ଠିତ ଦାନ, ପରିଶ୍ରମ, ନିସ୍ୱାର୍ଥପର ଚିନ୍ତା ସର୍ବସାଧାରଣ (ଭକ୍ତ) ପ୍ରତି ସେବାମନୋଭାବ ଦେଖାଇ ପରିଚାଳନାରତ ଥିବା ଦୃଷ୍ଟିରୁ ଦେବୀଙ୍କର ଶୁଭାଶିଷ ତାଙ୍କ ପାଇଁ ଉଦ୍ଦିଷ୍ଟ ରହିବା ସଙ୍ଗେ ସଙ୍ଗେ ତାଙ୍କ ହୃଦୟରେ ମା'ଙ୍କର ଏକଶକ୍ତି ପରିଚାଳିତ ହେଉଛି ଏଥିରେ ସନ୍ଦେହ ନାହିଁ । ଏଣୁ ଭାଗବତ କହେ—

"ସର୍ବେ ଚଳିବେ କାଳବେଳେ କଥା ରହିବ ମହୀତଳେ
ଧନ ଅର୍ଜନେ ଧର୍ମିକର ଧର୍ମେ ପ୍ରାପତ ନରହର ।"

କିନ୍ତୁ ଦୁଃଖର କଥା ଏହି ପୀଠସ୍ଥଳ ଦକ୍ଷିଣ ଓଡ଼ିଶା ଏବଂ ଆନ୍ଧ୍ରର ଉତ୍ତର ଉପାନ୍ତ ଓ ପୂର୍ବାଞ୍ଚଳ ବ୍ୟକ୍ତିଙ୍କ ଅନ୍ୟନ୍ତ ଅପରିଚିତ । ସରକାରୀ ବେସରକାରୀ ସ୍ତରରେ ଏହି ପୀଠର ମହାତ୍ମ୍ୟ ବର୍ଣ୍ଣନା କରାଯାଇ ପାରିଲେ ପୀଠ ସ୍ଥଳର ଉନ୍ନତି ସହ ପୀଠର ଅନ୍ତର୍ନିହିତ ଆହୁରି ବହୁତଥ୍ୟ ଆବିଷ୍କାର ହୋଇପାରିବ ଏବଂ ଦେବୀଙ୍କ କରୁଣା ସାଗରରୁ ଏକ ବିନ୍ଦୁ ନିର୍ଝରିତ ହେଲେ ଦେଶ, ଜାତି, ସମ୍ପ୍ରଦାୟ ତଥା ସର୍ବସାଧାରଣଙ୍କ ମଙ୍ଗଳ ହେବ ।

ଏହି ବହିର ପ୍ରଥମ ପର୍ଯ୍ୟାୟରେ ବର୍ଣ୍ଣିତ ଜଣାଣ, ଧ୍ୟାନ, ପୂଜାମନ୍ତ୍ର, କବଚ, ବୀଜମନ୍ତ୍ର, ଜପମନ୍ତ୍ର ଇତ୍ୟାଦି ଯେଉଁବ୍ୟକ୍ତି ପ୍ରତିଦିନ ପ୍ରଭାତରେ ସ୍ନାନଶୌଚ ହୋଇ କିମ୍ବା ପ୍ରତି ମଙ୍ଗଳବାର, ଶନିବାର ବା ସନ୍ଧ୍ୟାନ୍ତ ଦିନ ପୂଜା ପାଠ କରିବ ତା ମୁହଁରୁ ବାହାରିବା ସମସ୍ତ ବାକ୍ୟ କବିତା ରୂପରେ ଅମୃତ ରସଯୁକ୍ତ ହେବ, ସକଳ ବ୍ୟକ୍ତି ତାର ବଶୀଭୂତ ହେବେ, ସେ କୁବେର ତୁଲ୍ୟ ଧନଧାନ୍ୟ ଲଭ କରିବ, ତାକୁ ଶତ୍ରୁମାନେ କାଳ ସ୍ୱରୂପ ମନେ କରିବେ । ସେ ଦୀର୍ଘାୟୁ ହୋଇ ଶେଷରେ ଚତୁର୍ବର୍ଗଫଳ ଲଭ କରିବ । ଯିଏ ଦେବୀଙ୍କର ପ୍ରତିବିମ୍ବ ରଖି ପ୍ରତି ମଙ୍ଗଳବାର ଓ ଶନିବାରରେ ଗନ୍ଧ, ପୁଷ୍ପ, ଧୂପ, ଦୀପ, ଚୂଆ, କୁଙ୍କୁମ, କସ୍ତୁରୀ ଗୋରଚନା, ସିନ୍ଦୁର, ଅଳତା ଇତ୍ୟାଦି ଦେଇ ନୈବେଦ୍ୟ କରି ଏହି ପୁସ୍ତକଟି ପାଠ କରିବ, ପାର୍ବତୀଙ୍କ ପୁତ୍ରତୁଲ୍ୟ ପୁତ୍ର ପାଇବ, ସମସ୍ତ ପ୍ରକାର ଅଭୀଷ୍ଟ ଓ ସକଳସିଦ୍ଧି ଲବ୍ଧ କରିପାରିବ ।

ହେ' ମା ! କରୁଣାମୟୀ !! ଏକପାଦ !!! ଚତୁର୍ଭୁଜା !!!! ମହାଶକ୍ତିଧାରୀ, ଜଗତ ଜନନୀ, ତୁମ୍ଭେ ଜଗତର ରକ୍ଷା ନିମିତ୍ତ ସତ୍ତ୍ୱ, ରଜୋ, ତମୋଗୁଣ ସମନ୍ୱିତ ଶକ୍ତି ସଂଯୁକ୍ତାହୋଇ, କାଳୀ, ତାରା, ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା', ଧୂମାବତୀ, ବଗଳାମୁଖୀ, ମାତଙ୍ଗୀ ଆଦିରୂପ ନେଇ ଅଧିଷ୍ଠିତା । ହେ' ମହାମାୟୀ ! ମାନବ ସମାଜକୁ ଶୁଭାଶିଷ

ପ୍ରଦାନ ପୂର୍ବକ ଅମୃତର ସନ୍ଧାନ ଦିଅନ୍ତୁ ଏବଂ ଜଗତର କଲ୍ୟାଣ ସାଧନ କରନ୍ତୁ । ଏହାହିଁ ଆଜ ମୋର, ଏ ଜାତିର, ଏ ଦେଶର ତଥା ଏ ସୃଷ୍ଟିର ଦେବୀଙ୍କ ପାଦ ପଦ୍ମରେ ବିନମ୍ର ପ୍ରାର୍ଥନା ।

ଓଁ ସର୍ବେଷାଂ ସ୍ୱସ୍ତିର୍ଭବତୁ,
ସର୍ବେଷାଂ ଶାନ୍ତିର୍ଭବତୁ ।
ସର୍ବେଷାଂ ପୂର୍ଣ୍ଣଂ ଭବତୁ,
ସର୍ବେଷାଂ ମଙ୍ଗଳଂ ଭବତୁ ॥
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।।।



ସହାୟକ ଗ୍ରନ୍ଥ— (୧) ତାନ୍ତ୍ରିକ-୨ୟ ପୁଷ୍ପ, ୩ୟ ସୌରଭ ୧୩୮୯ ସାଲ ।
(୨) ଓଡ଼ିଶାର ଦେବଦେବୀ, ୨ୟ ସ୍ତବକ ।
(୩) ଦୈନିକ ଆଶା
(୪) ପ୍ରଜାତନ୍ତ୍ର
(୫) ଶ୍ରୀଶ୍ରୀ ସିଦ୍ଧ ଭୈରବୀ ଜଣାଣ ୧-୧-୮୧
(୬) ଶ୍ରୀ ସିଦ୍ଧ ଭୈରବୀ ଜଣାଣ ୧୯୮୧
(୭) ଭାଗବତ ।

ଏହି ଲେଖକଙ୍କର

## ଆଶୁ ମୁକ୍ତି ପ୍ରତୀକ୍ଷାରେ

**୧ । ଜ୍ୟୋତିର୍ଗମୟ**

(ଜୀବନତତ୍ତ୍ୱମୂଳକ ପ୍ରବନ୍ଧ)

ପ୍ରକାଶକ **ଓଡ଼ିଶା ବୁକ୍ ଷ୍ଟୋର, କଟକ-୨**

**୨ । ସ୍ୱାମୀ ଶିବାନନ୍ଦ ସରସ୍ୱତୀ**

(ସ୍ୱାମୀଜୀଙ୍କ ଜୀବନୀ ଓ ଦର୍ଶନ ସମ୍ବଳିତ)

ପ୍ରକାଶକ **ରାଷ୍ଟ୍ରଭାଷା ସମବାୟ ପ୍ରକାଶନ, କଟକ-୮**

**୩ । ବାପୁଜୀ ଏକ ଅବତାର**

(ଗାନ୍ଧିଜୀଙ୍କ ଜୀବନୀ, ଆଦର୍ଶ ଓ ସଦୁପଦେଶ ସମ୍ବଳିତ)

ପ୍ରକାଶକ **ବିଜୟ ବୁକ୍ ଷ୍ଟୋର, ବ୍ରହ୍ମପୁର-୧**